# ଅରୁଣା ।

ଲେଖକ ଓ ପ୍ରକାଶକ

ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

ଉଦଗାପଡ଼ିଆ—କଟକ



ପ୍ରଥମ ସଂସ୍କରଣ

୧୯୩୯

କଟକ ମହାନଦୀ ପ୍ରେସରେ

ଶ୍ରୀ ରାଧାକୃଷ୍ଣ ସାହୁଙ୍କଦ୍ୱାରା ମୁଦ୍ରିତ

ମୂଲ୍ୟ ୪ ୦ ।  ଚାରିଅଣା ମାତ୍ର

# ଉତ୍ସର୍ଗ



ଅଥ ସାଞ୍ଝରେ ତାରାଟିଏ ପରି ଖସିଲା ଦେଖ କେଡ଼େ ବିଜୁଳି ପରି,
ହସୁଥିଲା ସେ ଦୂରରୁ ରହି ହଲି ପତ୍ର ଦୋଳରେ ହାସ୍ୟରେ ହର
ସରଗ ଫୁଲ ସେ ଖସିଗଲା ଯେ କହାଇ ଅନ୍ଧାର ସେ କ ହେଲା ଶୀର
ବାତାହତ ସେ ପଡ଼ିଗଲା ତଳେ ଉଠିଲା ନାହିଁ ଅଉ ଧରଣୀ ଧର
ପ୍ରେମରେ ତାର ଜୀବନ କଟିଲା ବିକଳ ସେ ପ୍ରେମରେ ଅପଣା ଭର
କୁସୁମ ଯେତେ ଫୁଟିଲା ଲେଖାରେ ଦେଲା ସେ ଅଜାଡ଼ି ଶୋଭା ଦେବତା ପଦ
ଜୀବନ ଗାନ ଅବସାନ ହେଲା ତାର ଗଲା ସେ ଚାଲି ଆସିବ ନାହିଁ
କୁନ୍ତଳା ସେହି ବଡ଼ ପ୍ରିୟଥିଲା ଛାଡ଼ିଗଲା ଉତ୍କଳ ଜନମ ଭୂଇଁ
ଶେଷ ନ ଥିଲା ଗାନଟି ତାହାର ବଜ୍ର ପଡ଼ିଲା ମୁଣ୍ଡେ ରହିଲା ନାହିଁ
ସବୁ ଛାଡ଼ିଣ ଚାଲିଗଲା ସେହି ହାସ୍ୟ ହାସ୍ୟରେ ବଜ୍ର ହାଣିଲା ସେହି
ତାରାଟିଏ ଗୋ ଜ୍ୱଳୁଥିଲା ସେହି ମରତରେ ରହି ଗୋ ଅଜି ସେ କାହିଁ
ସଞ୍ଜବେଳେ ତୁ ସକାଳେ ସାଞ୍ଝରେ ଆଉ ତାକୁ ପାଇବୁ ନାହିଁ ଗୋ ନାହିଁ
ଶେଷ ହେଲା ଗୋ ଜୀବନ ଖେଳ ତା ବଡ଼ ଭଲଥିଲା କୁନ୍ତଳା କାହିଁ
ଉତ୍କଳର ଅପେ ଫୁଲଟିଏ ସେହି ଫୁଲଟି ପରି ପରା ଚାଲି ସେ ନାହିଁ ।



ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ

# ଅଦ୍ୟଚନ୍ତୁନ

ଚନ୍ଦ୍ର ଛଳ ଛଳ ଅଶ୍ରୁ ବହି ଯାଏ   ହାଯୃ ! ହାଯୃ । ହାଯୃ !
ଘାଣି ଝମ୍ ଝମ୍ ବରଷା ବାଏ   ହାଯୃ ! ହାଯୃ ! ହାଯୃ !
ଖଡ୍ଗ ଝଣ ଝଣ ଅସ୍ତ୍ର ଝଣାଏ   ହାଯୃ ! ହାଯୃ ! ହାଯୃ !
ଝିଲ୍ଲୀ ଝଙ୍କାର କେତେ ଯେ ଅସେ   ହାଯୃ ! ହାଯୃ । ହାଯୃ !
କା କା କା କା ଶୁଣି ଦନ ରାଜ୍ଜ   ହାଯୃ ! ହାଯୃ ! ହାଯୃ !
ଗୋରୁ ଡାଈ ହମ୍ବା'ଲ   ହାଯୃ ! ହାଯୃ ! ହାଯୃ ।
ଭେକର ଭକ ଡକ   ହାଯୃ ! ହାଯୃ ! ହାଯୃ ।
କୁକୁର ଭୁକେ ଯେବେ   ହାଯୃ ! ହାଯୃ ! ହାଯୃ ।
ଝଡ ଧଡ଼ ଧଡ଼ ଆଉ   ହାଯୃ ! ହାଯୃ ! ହାଯୃ !
ସାପର ଫେଁ ଫେଁ   ହାଯୃ ! ହାଯୃ ! ହାଯୃ !
ଚଢ଼େଇର ଫର ଫର   ହାଯୃ ! ହାଯୃ ! ହାଯୃ !
ମହିକା ଭଣ ଭଣାଏ   ହାଯୃ ! ହାଯୃ ! ହାଯୃ ।
ପାଣି ପଡ଼େ ଟପ୍ ଟପ୍   ହାଯୃ ! ହାଯୃ ! ହାଯୃ !
ଶିଅଳ ଯେବେ ହୁଆ ହୁଆ   ହାଯୃ ! ହାଯୃ ! ହାଯୃ !
ଫେରୁ ଯେତେ ଫେଉ ଫେଉ   ହାଯୃ । ହାଯୃ ! ହାଯୃ !
ଘାଣି ବହିଗଲା ବତାଶ ବାଏ   ହାଯୃ ! ହାଯୃ । ହାଯୃ !
ମାଛ କୁଦଲା, ହରିଣ ପଳାଇଲା   ହାଯୃ । ହାଯୃ । ହାଯୃ ।
ଧିତଲା ବଇଁଶୀ କୃଷ୍ଣ ସେ   ହାଯୃ । ହାଯୃ । ହାଯୃ ।
ବାଜିଲା ମୃଦଙ୍ଗ ନାଚିଲା ମିଠ ଜଅସି   ହାଯୃ । ହାଯୃ । ହାଯୃ ।
ତବଲାର ଠନକ, ସୀତାର ଝନକ   ହାଯୃ । ହାଯୃ । ହାଯୃ ।
କୋକିଲର ଡାକ, ଟୁଅ ଯେତେ ଠେଁ ଠେଁ ହାଯୃ । ହାଯୃ । ହାଯୃ ।
ସବୁ ଶୁଣିଲି ବହିଲି ଚହ୍ନ ଫେ   ହାଯୃ । ହାଯୃ । ହାଯୃ ।
ତୁମରି ପାଇଁ ଜୀବନ ଗଲା ଯେ   ହାଯୃ । ହାଯୃ । ହାଯୃ ।

# ଅତୃଷ୍ଣା



ଫଗୁଣ ଚଇତ
ବସନ୍ତ ଲୀଳା
ଆସିଅଛି ଭାସି
ଆନନ୍ଦର ଭେଳା
କୋଇଲି ଡାକେ ଡ଼ାଳେ ଡ଼ାଳେ
ବଉଳ ଧରିଛି ଆମ୍ବ ଟିରେ
ହୋସ୍‌ନେ ହେନା
ଗନ୍ଧ ଆସେ ଭାସି
ମଲ୍ଲୀ ଫୁଟଇ ଦେଖ
କେତେ ହସି ହସେ
ମଧୁର ଫଗୁ ମଧୁରେ ରଞ୍ଜି ଦେଇଛନ୍ତି
କେତେ ପ୍ରିୟା ପ୍ରୀତି
ପିଚକାରୀ ହାତେ ଖେଳନ୍ତି ହୋରି
କେତେ ଆନନ୍ଦେ ମାତି
ସବୁ ଦେଖୁଛି ବସି ବରନ୍ଦେ ରସି
ହସ ନାହିଁ ମୋର କାନ୍ଦ ନାହିଁ ମୋର
କହୁ ନାହିଁ ସିନା ମଳୟ ଆସଇ ହସି
ଯିବି କେବେ ମୁଁ ଉତ୍ତର ପଥେ କେଉଁ ଅଟଡ଼େ ଭାସି
ଶୁଖିଲା କାଠ କଷେଇ ଥିଲି
କାହାର ମରମେ ପରଶେ
ଆଉ ନାହିଁ ସେ କାଉଁରି ହାଡ଼
ପ୍ରାଣ ଯାଏ ଏବେ ହତାଶେ
ଖୋଜେ କାହାକୁ ମୁହିଁ ଅନ୍ତର ଭରି
ଅନ୍ତରେ ସିନା ପରଖି ପରିଛି
ଗଳଣି ଦୁଃଖେ ବୁଝି

ଯାହାକୁ ଧରିଲି    ଯାହାକୁ କଲି
ଅପଣାର
ଦୁଃଖେ ଅନ୍ତରେ    ଘଟରେ ଯାହାର
ପାଇବି ବୋଲି ଚିର ଶାନ୍ତି
ମିଥ୍ୟା ଦେଖେ ଯେ ବାର ବାର
ଅଛି ଭବ ଧାରେ    ଶେଷ ବେଳାରେ
ଚଢ଼ିଛୁ ତୁହିଁ
ଯେତ୍ ଅଛେ ଯାଏଁ ପଛେ    ଏକଲା ଯିବ ଭାସି ରହୁ ରହୁ ।



ସବୁ ଅଛେ ଭୁଲି ଭୁଲି ଅଛିଲି
ତୁହିଁ ଶିଶୁ କୋଳେ ।
ଶିଶୁଟି ମୋର କୋଳରେ ଟେକି ନେଲି ଖେଳେ
ଖେଳିଲି ତାହା ସାଥେ ସକଳ ଭୁଲି
ନାହିଁ ଅଭିମାନ, ନାହିଁ ଗରବ ଗୁମାନ,
କହିଲି ତାକୁ, ସେ ମୋର, ମୁଁ ତାର,
ଆନନ୍ଦ ମନ ।
ଖେଳିଲି ମୁହିଁ ତାହାର ହାତ ଧରି
ନାଚିଲି ପୁଣି ତାହାରି ସାଥେ ପ୍ରେମେ ଭରି -
ତୁଚ୍ଛ ହେ ! ତୁଚ୍ଛ ଜଞ୍ଜାଳ
ଦଣା କଟା ମାର ଦେଖି ଯେତେ
ମିଳୁଛି ମୋର ପ୍ରାଣର ଚିଅର
ଅମୀୟ ଝରି ଏ ଦିନ ରାତେ ।



ବସନ୍ତର ଶୁଭ୍ର ଆକାଶେ
ଅଇମ୍ ତେ ଅଂଗଲ

## ମେଘ ମନ୍ଦ୍ର

କି ଗୁରୁ ଗମ୍ଭୀରେ ସେ ।
ଅନ୍ଧାରିଲା ଆକାଶ ସାରା
ଢାଳିଲା ଧାରା ମାତିଲା ବଜ୍ର
କମ୍ପିତ ଧରା ।
କିଏ ସେ ସଢେ ଆସେ ସେ ।
ଗୋପନ ସଞ୍ଚାର କାହାର ଏତେ
ହୃଦୟ ମୋହର ଭାଙ୍ଗ ଯେତେ
ପ୍ରିୟ ବୋଲି ଦେବ ଚୁମ୍ବନ
ଫଣୀ ପରି ଆଘାତିଲା ମୋତେ କିଏ ।

---

ପ୍ରେୟସୀ ମୋର ଗୃହ ଦ୍ୱାହାର
ଦେଇଛି ଖୋଲି
ବନ୍ଧ ତାହାର ପ୍ରେମେ ଭରି
ଉଚ୍ଛ୍ୱସିତ ସିନ୍ଧୁ ଧାରା
ହସିତ ସେ ଗ୍ରୀବ ଗ୍ରୀବ
ପ୍ରଣୟେ ଧରା କଟେ ମଲ୍ଲ ।
ଧରା ଆଜି ମାଗେ ଭିକ୍ଷା
ସର୍ଗ ଦେ ଦିଅ ଶିକ୍ଷା
କଦମ୍ବ କୋରକ ମୋର ଉଚ୍ଛ୍ୱସିତ
ଫୁଟି ଉଠୁ ହେମ କଳି ଫୁଲ ଫୁଲ
ଅନ୍ଧାର ଧରଣୀ ବୁକେ
ଚମତ୍କାର ଆଲୋକ ବକ୍ଷେ
ଚୁମ୍ବନ ଦିଅ ସ୍ୱର୍ଗ-ଦେବ, ଧରା ଆଜି
ବେଦ ଯଜ୍ଞ ଋତୁ ଛଇଳୀ



ଘନ ଘୋର ଗର୍ଜନେ
ଅନ୍ଧାର ଘଟନେ ଧରା ଯେବେ ସୁପ୍ତ
ଜାଗ୍ରତ ମୁହିଁ ଭୁମର ଧ୍ୱଅନେ
ଜାଗ୍ରତ ମୁହିଁ ଲୋ ଉକାଷି ମୁହିଁ
ଚିର ଜାଗ୍ରତ
ନିଦ୍ରା ନ ଭେଟେ ନୟନେ
ଝାମ ହୋଇ ଯାଏ ଶ୍ୟାମ
ବିଦ୍ୟୁତ ଦାମ କ୍ଷଣେ କ୍ଷଣେ
ମୁଁ ଯେ ପିଆସୀ ଅଛି
ଚିର ତୃଷାର୍ତ୍ତି
କେହି ତ ମୋତେ ନ ଦେବେ ଚିର ଧନ୍ୟା
ଖାଲି ସବୁ କି ଫାଙ୍କି
ଜୀବନ ଯାକ ହେଉଥିବ ଏହିପରି
କି ଚିର ବ୍ୟଥିତ ?



ଶେଷ ବୟସେ ବନ୍ଧା ହେଲି
ମୃଗ ତ ସେ
କାହାର ବୀଣା ବଂଶୀ ରବ ମୁଗ୍ଧ
ବନ୍ଧା ଛନ୍ଦା କାହା ଗଲେ ସେ
ଶିଶୁ ପରି ତରଳ ଗୃହିଣୀ
ପଲାଶ ବନେ ଫଗୁଣ ବହ୍ନି
ତଏ ସେ ଠାଣି ନେଲି ମୋତେ
ଶେଷ ବୟସେ କଏ ସେ
ଧର୍ମର ବିଦାୟ ନେବା ବେଳରେ
ହଏ କହଲି ବିରହି ! ରୁଦ୍ଧ ରୁଦ୍ଧ ରେ

ଶୁଖି ଯାଥ ଯାହା ଯାଇ ନାହିଁ
ଅନ୍ତିମ ଜୀବନେ ଧରି ଯାହା
ଦେଉନ ଧରା
ବସନ୍ତ ବୀଣା ଆନନ୍ଦମୟୀ ଅମୀୟ ଯେ !



ଧରାରୁ ଯେବେ ବିଦା ଦେବେ
ମୋତେ ସର୍ବେ
ସେହି ଦିନ ନ ଥିଲେ ତୁମେ ପାଶେ
ଦୁଃଖ ହେବ ବ୍ୟଥା ଭରିବ
ମରି ପାରିବି କି ତେବେ
ଭୁଲି ଯିବି ସକଳ ଦୁଃଖ ସଙ୍କୁଳ ବ୍ୟଥା
ଭୁଲି ଯିବି ପଛେ, ପଛେ ପଛେ ପଛେ,
ରହିଥିବ ଯଦି ପାଶେ ପୁଣି ସ୍ନେହ ଦିନ
ହାତ ଧରି ତୁମର ମୁହିଁ ଭୁଲିବି ସବୁ
ଖାଲି ମରଣ କୂଳେ ସନ୍ଧ୍ୟା ବେଳେ
ଥିବ ଯଦି ତୁମେ
ଭୁଲିବ ପଛେ ପରେ ତୁମେ
ଚିତ୍ତ ବର୍ତ୍ତି ମୋର ସବୁ ଲୁଚିବ ଯେବେ
ଦୁଃଖ ନାହିଁ ଥିବ ଯଦି ମୃତ୍ୟୁ ଯେଉଁବ ଯେତେବ ।
ମରଣ ପରେ ଜାଳ ଯୋଡ଼ି ଦେବ ଯେବେ
ଏହି ଦେହ
ପାଉଁଶ ମୁଠା ରହିବ ପଡ଼ି
ରହିବ ନାହିଁ ମୋହ
ଯିବ କି ମରି ମୁହିଁ
କ୍ଷିତ୍ୟପ୍ ତେଜ ମରୁତ୍ ବ୍ୟୋମେ ଯିବ ଯେବେ ରହି

ନାହିଁ ନାହିଁ ନାହିଁ ସାରା ବର୍ଷ ହେବ ମୋର ଗେହ
ଫୁଟିବ ଫୁଲ ସରସ ହୋଇ ମୋହର
ପରଶେ
ହସିବ ତାରକା ଉଜ୍ଜ୍ୱଳ ଉଜ୍ଜ୍ୱଳ
କହିବ ମୁହିଁ ହେ ପ୍ରିୟ ସୁଖେ ରୁହ ।



ଯୌବନ ମନ୍ଦିର ଦୁଆରେ
ଭେଟିଲି ପ୍ରଥମ ପ୍ରଣୟ ପରଶେ ଯାହାରେ
ସେହି ଦିନୁ ଏବେ ହନେ ବୁଝିଲି
ମୋର ହୃଦୟ
ତାହାର ପାଇଁ ତୁଏଁ ସିନା ମୁଁ
ଥରେ ଥରେ ଅଥୟ
ଆଉ କଏ ଅଛି କାହା ପାଶେ
କହିବ ଏବେ ଗୁପତ କଥା
ହୋଇ ଏବେ ନିର୍ଭୟ
ସେ ଯେ ପରାଣ ସଖୀ ମୋର
ମୋର ମନର ବଇଁଶୀ ସ୍ୱର
ବାଜୁ ଅବା ନ ବାଜୁ ତର ଅଜ୍ଞାବହ ।



ମାଳତୀ ବଲ୍ଲୀ ବତାନେ
ଜୀବନର ଅଦ୍ୟ ମୋର ଜୀବନର ସାୟାହ୍ନେ,
ଦେବ ଦିନା ବତାଇ
ଏତକ ମାୟା ମମତା, ସେହି ଗଛଟା
ଅଛି ମୋ'ତେ ଚର ଗୁହି ।
ସ୍ୱର୍ଗରେ ସିନା ଥିଲା ପର ଚଢ଼ି ଥିଲି

ତାହାର ଦେହେ ବୃକ୍ଷୋପର
ଅଙ୍ଗ ଅନ୍ତରେ ଅନ୍ତରେ ରହିଲ
ସେହି ଭାବକୁ ଧର ସହି ।
କେତେ ବସନ୍ତ ଅସିଛୁ, ଯାଉଛୁ ଚାଲି
କେତେ କହୁଛୁ କଥା, କେତେ ଅବା କହୁ ନି
ଆଉ ଅଉ ଋତୁ ଯେତେ; କଥା କେତେ
କହୁଛୁ ମୋତେ
କମ୍ପିତ କରୁଛୁ ଅଧର ବସ ରହି ରହି ।।



ତରୁଣ ଅରୁଣ ଅସ ଆଜ ଭୁବନ ପଦେ
ଅସ ନବୀନ ଯୌବନ ଅଭିଳାଷୀ ମୁଗ୍ଧ ହୃଦେ
ନବ ଯୌବନ ଯାତ୍ରୀ ତୁମେ ତ ଅସ
ବିରହ ତାପ ଜାଳି
ମଦନ ଉତ୍ସବେ ରତ୍ତ ରଙ୍ଗପଙ୍କ ସଙ୍ଗ
ଫୁଲ କୋଦଣ୍ଡ ଧରି
ଅସ ବୃଦ୍ଧ ହର୍ଷିତ ହୃଦେ
ଅନନ୍ଦ ମୋଦେ ଅସିଛୁ ହୋଇ
ପକ୍ୱ କେଶ ଛେଳିତ କର ଯୌବନ
ଅସ୍ତ ଫେରି
ବସନ୍ତ ମଲୟେ ମନ୍ଦାକିନୀ ସୁବାସେ ଭରି
ଅଜ ଆଉ କଏ ଅସିବ ଅସ
ନବ ନାଗରୀ ଗୋଷ୍ଠୀ
ଖେଳିବ ହୋରି
ଅସିଛୁ ବସନ୍ତ ନବକିଶଳୟ ସବୁଜ ମୁଞ୍ଜରି ।।



ନଦୀ କୂଳେ କୂଳେ
ନଦୀ କୋଳେ କୋଳେ
ବସଇ କେତେ ନର ନାରୀ
ଭସଇ କେତେ ତରୀ ।

କେତେ ମନ ଆଜ ପ୍ରେମ ଚଞ୍ଚଳ
କେତେ ଜନ ଆଜ ଧରୁ ନାରୀ ଅଞ୍ଚଳ
ଶ୍ଲଥ ପାଦ ଚାଳନେ ମନ୍ଦାକ୍ରାନ୍ତା ଛଳନେ
କେତେ ଅବା ନାଗର ନାଗରୀ ରସି ସଚଳ ।

ଧାନ-ଜନ-ମନ ଆଜି କେତେ ପୂର୍ତ୍ତି
ଅଜ୍ଞାନ-ମୂର୍ଚ୍ଛନୀ ମଳୟ ସ୍ପନ୍ଦନୀ
ଚାରୁ ହିଲ୍ଲୋଳ ।

ସକଳେ କରନ୍ତି ନୃତ୍ୟ
(ମାତ୍ର) ବିରହୀ ଜନ ତାପିତ ବକ୍ଷେ ଛିଦ୍ର
ଛାତିରେ ମାରଇ ଘନ ଘନ ଆପଣା କର ।



ଆସି ସେ ଜୀବନ ପଥେ
ଗଲା ଚାଲି ଉର୍ଦ୍ଧ୍ୱକ୍ ରଥେ
ଆଉ କି କେବେ ଫେରିବ ନାହିଁ
ପ୍ରାଣେ ପ୍ରାଣେ ଦେଖା
ସେ ପ୍ରାଣର ମଧୁ ରେଖା
ଆସି ସେ ଦେଇଥିଲା ଆନନ୍ଦ ମୋତେ
ପଥେ ଯାଉଁ କଣ୍ଠୀଥ ସ୍ୱରେ
ଛାଡ଼ି ଯେତେ ଛାଡ଼ି ପାଶେ
ଥରନ୍ତି ସତେ

କାହିଁ ଗଲା ସେହି ଦିନ
ସେହି ରାତି
ଭୁବନ ଭରି ବୁଲିଲେ ନ ପାଏଁ
ସେ ପରଶ ରେଖା
ଦୂରେ ମୁହିଁ କି ଚିରକାଳ ରହିବି ଏକା ?

ବେଦନା ସମ୍ଭାଳି ଏହି ବୁକୁରେ
କେତେ କହିବା ନା, ନା, ଆଉ ଏ ବାଣୀ
ନା କହିବି ରେ
ଆସିଲା ମାୟା ମୃଗ ପରି
ଗିରିଅଡ଼ୁ ଅନ୍ଧକାର ଭରି
ନେଲା ମୋତେ ଟାଣି ରେ
ସ୍ୱର୍ଗରେ ଦେବତା ଛାଡ଼ି
ବାଟରେ ଗଲି ମୁଁ ହୁଡ଼ି
ରୂପସୀ ମୋହିନୀ ରେ
ନିଖିଲ ବିଶେ ବେଦନା ମୋହି
ଉଠିଲା ଭାସିଲା ମିଶିଲା ଯାଇ
ମୁଁ ରହିଲି ଚିର ଅଥିର ରେ ।

ପାହାନ୍ତିଆ କୁହୁକେ
କାହାର ପରଶେ ଜାଗିଲା ଏ ବୁକେ ?
ଭୁଲି ଗଲି ମୋର ସବୁ କଥା
ନିଶୀଥ କାନ୍ଧେ କାନ୍ଦି ଦେଇ ଯାଇଥିଲା ତାର ବ୍ୟଥା
ଅଧର କୋଣେ ରଖିଥିଲା କିଏ ଏତେ
ମଧୁ ଲୁଚାଇ

ଝଣ୍ଟେ କାହାର ବର୍ତ୍ତୁଳ ପରଶ

ଛଡ଼ି ଦେଲା ହଜାର

ଅଶ୍ରି ପଡେ ଆଖୁ ଚଷି

ଗୃହିଁଲି ନୀରବେ ଚମକ ଚମକ

କାନନେ ଶୁଭିଲା ମର୍ମର ବାଣୀ

ହୃଦ୍ୟା ତାର ଉଠେ ପଡ଼େ ଜାଣି

ଲୁଚିଗଲା ତହିଁ ତାକ ଦେ କାନ୍ଦୁକେ

ଫେର ଫେର ସନ୍ନ୍ୟାସୀ ଅଭ୍ରାନ୍ତ ପଥ ଗୃହିଁ

ଝିବ ପରା ତାଙ୍କ ସାଥେ ଚହ୍ନିବ ବଣପୁଷ୍ପେ



ପଥ ବଦଳାଇବା ବୋଲି ଭାବିଥିଲି ମୁହିଁ

ପାରିଲି ନାହିଁ,

କାଠ ବଣା ହୋଇ ବୁଲଇ ମହୀ

ମାଲ ଅମ୍ବରେ ଦେଖେ କାହାର ଛଇ.

ଦୀପ ଦେଖାଏ ସ୍ୱନଶୀ ଯେ;

ସନ୍ଧ୍ୟାରେ ନାଚ ନାଚ ସେ;

କୋକିଲ ଡାକେ କାକ ବିହଙ୍ଗମ ଅଦ୍ଧ ଯେତେ.

ଜଙ୍କର ମୃଜା ଭୁଲି ଏବେ ସୁଧାରସ ବୋଲି.

ମନ୍ଦିର, ଭଜେଁ, ଏତେ

ଝରଣା, ଠେଲା, ଠେଲ ହୃଦୟ ଅଟଳ.

ଅଭ୍ରୁକ ଜୀବନେ ପୂଜାର ନୈବେଦ୍ୟ,

ନୋହିବ, ମନେ

ଖାଲି କପ୍ରତ୍ତି, ସକାଳେ ଅରୁର

କାତର ହେଉଥିବ ରହି ରହି ।



ଜନ ହରଣୀ                ମନ ହରଣୀ

ଝୁରି ଯାଉଛି          ଦୂରେ ବସିଛି ମୁଁ ବିରହିଣୀ

ଅକୁଳତା ବ୍ୟାକୁଳତା ମୋର ନାଚ ଦରେ

ତଳକୁ ତଳକୁ ଖସେ ମୁହଁ କେହି କ

ରକ୍ଷା ନ କରେ

ଛଅ ଋତୁ ଆସେ ଏକା ଏକ ପରେ

ମୁଁ କାନ୍ଦୁଥାଏଁ ହଜାଇ ସବୁ

ଖାଲି ଭୁଲେଣି

ରୌଦ୍ର ତାପେ କ୍ଲାନ୍ତ ହୋଇ

ଅମ୍ର କୁଞ୍ଜେ ପଶେ ଯେବେ ଯାଇଁ

ଆକୁଳ କରେ ମଧୁପ ସବୁ

ବସି ନ ପାରେ କାନ୍ଦେ କେତେ,

ମନେ ଗୁଣି ଗୁଣି ।



ନ ହେଲା ଯେତେ ଏ ଜୀବନେ ଅଉ କଷ୍ଟ

ଧନ୍ୟ କର ଭଗବାନେ ତାହା ଅଛି

ଯାହା ପାଇଅଛି ।

ଏହି ଜୀବନେ          ବ୍ୟର୍ଥତାର ମୂଳ

ବସି କନ୍ଦନର ରୋଳେ

ଦିଗନ୍ତ ଭସାଇ ମୁଁ ଦେଉଲେ ।

ଆଉ ଯଦ ନ ହେଲା କଷ୍ଟ

କ କରିବ କହ ମୁଁ ତ ବାଛି ବାଛି

କରିଥିଲି ଅଣ ପାଇବି ଅମୃତ

ହଏ ଦେଲ ବେଟାଇ ବିଷ ଯେହି

ଦେବେ ଯେ କାହିଁକି ।।

ନ ହେଲା ନାହିଁ ଏ ଜୀବନେ
ଗୃଆଡ଼ର ଆଉ ସଂଯୋଗନେ
କାନ୍ଦିବ ନାହିଁ ଯାଙ୍କ ଧନ ଯାହା ଅଛି
କହୁଚି ମୁଁ ଅନ୍ୟ ଯାହା ଯାତା ମୋତେ ଦେଉଛି ।।



କେତେଥର ତାହାର ପାଇଁ
ଆଉ ସବୁ କାମ ଦେଇଛୁ ଛାଡ଼ି
ତାକୁ ନେଇ
ଖେଳିବ ବୋଲି
ଭୁଲିବି ବୋଲି । ୧ ।
କେତେ ଧୀର ମର୍ମର
କହୁ ଯାଉଛୁ କଥା ସରମର
ସେ ଲଜ୍ଜା ଆପଣା ବୁକେ ପୋନ
ରଖିଛୁ ତହିଁ ଅଜାଡ଼ି ଦେବ ଖାଲି । ୨ ।
କାହିଁ ସେ ତ ଅସରି ନାହିଁ
ଆଶା ପଥ ଅଛି ଚାହିଁ
ଧନ ଧନ ଆକୁଳ ବ୍ୟାକୁଳ
ମରମେ ଖୋଜେ ଯାହାକୁ ନ ପାଇ ମରଣ
ଲୋଡ଼ିଲି । ୩ ।



ଜାହାର ପଥେ ରହିବ ବୋଲି
ଛାଡ଼ି ଚନ୍ଦ୍ର ମର୍ମିତେ ଖାଳି ଦା ହୁତାଶନ
ତପ ନିସ୍ପନ୍ଦିତ ବିଷ ପରି ମୋଦିତ
ମୁଁ ଶୁଣେଁ ନା ଆଉ ଆଣ ଯାହା ତର ଅମୃତ ସମାନ
ହୃଦୁବଳର ଭୂଙ୍କୁ ଚାହେ ନାହିଁ ଗୋ ତରଦନ

ବସନ୍ତର ସାଥେ ସାଥେ ଗୃଳ୍ପଯାଏ କାହିଁ ତୋ
ର ଅନୁମାନ

ମୁଁ ପତ୍ର ପତନ ବ୍ୟଥାରେ ବ୍ୟଥିତ ହୋଇ
ଖୋଜେ ଆଜ ଚିର ଅମୃତ ଚିର ଜୀବନ
ଅଗ୍ନି ସମ ଦାହନେ ଅତ ପକାଏ ମୋତେ ନାଶ
ହେଉଁ ମାନ
ଛାଡ଼ିବ ତାକୁ ଛାଡ଼ିବ ତାକୁ ନାଉ ତାକୁ
ତେଣୁ ଭଗବାନ ।



ଆକାଶେ ବତାସେ କାକଳୀ କୂଜନ ଯେତେ
ଧରୁଥିବେ ରହିବ ମୁଁ ଜୀବନ ମୋର
ଭଜାଇବ ଅମୃତେ ।
ନୀଳ ଗଗନ ସାଥେ ତାରା ମୋର ଭରିବ ଯେତେ
ଚନ୍ଦ୍ର ସାଥେ, ତପନ ସାଥେ, କରିବ ପ୍ରୀତି
ଧନ ରତେ ।
ଚେତନ ଯିବା ଉତ୍ଫୁଲ ହେବି, ପ୍ରୋଜ୍ଜ୍ୱଳ ହେବି
ତାକିବେ ତେଣୁ ଜଗତ ଲୋକ ସୋଦର
ଦେଖିବେ ମୋତେ ।
ସିନ୍ଧୁ ସାଥେ ତରଙ୍ଗ ତୋଳି ନାଚିବ ନିଶେଷ
ମୁହୂର୍ତ୍ତେ ମୁହୂର୍ତ୍ତେ ।
ଏହି ଜୀବନେ ମରଣ କାହିଁ, ସେ ଯେ
ନୃତ୍ୟ କରେ ନିତ୍ୟ ଅନ୍ତରେ
ଜୀବନ ସାଥେ ।



ବ୍ୟର୍ଥ'ର ଗାର ବାର ବାର
ଝାଣେ ମୁହିଁ କତ୍ୟ କତ୍ୟ
କର ଅବସାର
ତୃଷ୍ଣା ଚନର ଚିତ୍ତେ କଳଙ୍କ କାଳମା ଏବେ
ପୁଞ୍ଜୀଭୂତ ହେଲା ବାର ବାର
ନୂତନ ପ୍ରଭକ୍ଷା କତ୍ୟ କତ୍ୟ ଅବସାଦ ପରେ
ଭାବେଁ ମୁହିଁ କରେଁ ହେତ
ସେ ଯେ କାକର ପର ଶୁଖିପା ଏ
ସୂର୍ଯ୍ୟ ଉଠେ ଯେବେ ପ୍ରଖର
ଜୀବନ କ ମୋର ହେ ପ୍ରକାର
ହେଉଥିବ କତ୍ୟ କଲବଲ
ସୁଖ ବୋଲି ମାରୁଛୁ ଯହିଁ
ସୁଖ କାହିଁ ଦୁଃଖେ ଅଛୁ ପ୍ରଚୁର ।



ତଥାପି ଅଛୁ ଅଶା
ବପଦ ବେଳେ ହବ ଭରସା
ଝଡ଼ ତୋଫାନ ଉଠେ ଯେବେ ସୂର୍ଯ୍ୟ
ଯାଏ ଛପି
ଅନ୍ଧକାର ଗୃହଅଡ଼ ମାଡ଼ ଅସେ ସହସା ।
ପୁଣି ଅସେ ଯାଏ ସେ ପୁଣି
କତ୍ୟ ଅଭଳବ ସଂସ ର ଜାଣି
କତ୍ୟ ଲୀଳା ଏଥି ଅଭମୀତ
ମୋହର ଭାଗ୍ୟେ ଚଞ୍ଚଳ ସୁଖେ
ମନ୍ତ ହେବା କ ଜନ୍ମନ୍ତ
ଯାଉଛୁ ପଗ୍ ଫର ଅସି ଦେଖା ଦେବେ

ସେହି ମୋର ଚିର ବାଞ୍ଛିତ
ଚିର ପିପାସା
ସ୍ଥିର ପିପାସା ।



ଭୁଲାମନ ଭୁଲିଗଲ, ସବୁ ଛାଡ଼ି ଦେଇ
ଅଇଲ ଧାଇଁ
ମନ ଭୁଲାଣିଆ କଥାରେ କସ
ତୃପ୍ତି ହେବ ହେ ଭାଇ ?
ଉଦାସୀ ମନେ ବୁଲଇ ମହୀ
ଗଳି ଯାଇଛି ମୋର ଚେତନ ସମ୍ଭାର
ମୋତେ କହୁ ନ କହ
କରଥିଲ କେତେ ଆଶ
ଧନେ ନାହିଁ କହୁ କଲୁଷ
ସ୍ୱପନ ପର ଲାଗୁଛି ମୋତେ ଏହି
ଅଛି ଏହି ନାହିଁ
ଏହି ଥିଲା ଗଲା କାହିଁ ?



ଏଇ ଗନ୍ଧ ଏହି ବର୍ଣ୍ଣ ସ୍ପନ୍ଦ ସଂସାର
ଛାଡ଼ି ଯିବ କାହିଁ କହ
ଛାଡ଼ି ଏହି ଭବପୁର ।
ଉଡନ୍ତା ପବନେ ଖେଳଇ କେତେ ଭାବ
ଥିଲା ଯେ ମୋହର ସପନ ସମ
ଖେଳିଗଲା ଛାଡ଼ି ଏ ଧବ ।
ଗଛେ ଗଛେ ଲେନ୍ଥା ଲେନ୍ଥା
ଫେନ୍ଥା ଫେନ୍ଥା ଫଳ

[illegible]
[illegible]
[illegible] ଅଜଣା ପଥ
[illegible]
[illegible]



ଗୁଲି ଯାଉଅଛି ନଈ ବହି
ବହି ଯାଉଅଛି ସର ସର ମଳୟ ଏହି
ଶୀତଳ ଲାଗଇ ଶରୀର
ଦ୍ୱି ପହରର ବେଳ
ଏତେ ଉତ୍କଣ୍ଠା ହୋଇ ନଦୀ ଶୀକର ଦେଇ
ଆସୁଅଛି ଶୈତ୍ୟ ପବନ ଆହାରେ ଭାଇ
ମନ ମୋର ଉତ୍କଣ୍ଠା ତୋତେ ପାଇ
କହ କହ ମୋତେ କାହିଁକି ତୁ
ଯାଉ ଦୂରକୁ ରହି
କରେଁ ମୁଁ ହାଇଁ ପାଇଁ
ଜୀବନ କ ଖାଲି ବସିବା
ନା ଖାଲି କାମ କରିବା
ସବୁ ଯେ ଚିନ୍ତା ସେହି ଯେବେ ନ ଅସଇ ।



ଝାରବେ ଧ୍ୱଅନେ ରହିବ ତାହାର
ହୃଦ ଖଳ ଖଳ ନ ହେଉ ପଛେ
ଅନ୍ତର ବେଦନା ଅନ୍ତରେ ଯିବ ନାହିଁ ମର ।
ଭାବିଲି ଅନେକ ଥର
ଖାଲି କଥା କହୁଥାନ୍ତି

ନ ହେଲା ନାହିଁ ଅଉ କିଛି ଘଟନ ଭଙ୍ଗି
ମାନ୍ଦ ମନ୍ଦ ତ ତା ମାନଙ୍କ ନାହିଁ
ଅନ୍ତର ବେଦନା ଅନ୍ତରେ ରହିଲ ଦୂରାଇ
ଆଜି ଆଖି ଛଳ ଛଳ
ଜ୍ୱରେ ଛଟ ପଟ ସବୁ ପ୍ରବଳ
ଶୋଇବ ଅଙ୍ଗ ଅଚେତନ ଦେଖି
ମନେ ଆଦର ଭଲ ନ ରହିବ କି
ଯିବ କି ସବୁ ଖେଳ ସରି ।



ସେ କାନ୍ଦ ନାହିଁ ଅଲଗା
ମୋ ପାଇଁ କାନ୍ଦିଛି
ମୁଁ ଯେବେ କାନ୍ଦୁଛି
କାନ୍ଦୁଛି ସେ ତେବେ ମୋ ପାଇଁ ।
ପୂଜୁଛି ସେ ମୋତେ ନିତ୍ୟ କେତେ
ଶୟନେ ସପନେ
ସେବୁଛି ସେ ଯେତେ
ତାର ସବୁ ଦେହ ମନ ପ୍ରାଣ ଦେଇଛି
ସେ ମୋ ପାଇଁ ।
କଲ୍ୟାଣ ପାଇଁ ମୋର
ସେ ଉପବାସିନୀ ପୂଜାକରେ ଦେବତା
ଏତେ ଗଭୀର ତାର ପ୍ରେମ ଏତେ ବ୍ୟାକୁଳତା;



କାହାର କଥା କହିବି ନାହିଁ ଯେବେ
ଶୃଙ୍ଖଳ ଅଗଣା ପଥେ ମିଳିବେ
ତେବେ ଦଅ ଆସି ତୁମେ ଦେଖା

ମରମେ ରହୁ ଉଜ୍ଜ୍ୱଳ ସଦା ସେ ରେଖା ।
ବୁଝିବ ଜୀବନ ହେବେ,
ତାହାର ନାହିଁ ନିନ୍ଦା
ରହିଥିବ ପୂରି ଆପଣାର କରତବ୍ୟ ।
ସେହି ତ ମୋର ଜୀବନ ସୁଷମା
ହେବ ଆଣି ଚିର ଅନୁପମା
ନିର କର ମୋତେ ପୂର୍ଣ୍ଣ କର ହେ
ଭବିଷ୍ୟବେ ।



ଜୀବନ ପଥେ କେତେ କଥା
କେତେ ଅନ୍ୟଥା ହେଉଛି ଧନ ଋଦ୍ଧ
ମଙ୍ଗଳ ଅମଙ୍ଗଳ ସ୍ରୋତ ଦୁଇ ଚାଲିଛି
ବହୁ ଜଗାଇ ଆନନ୍ଦ ଜଗାଇ ଭୀଡ଼ ।
କେତେ ଘର ହେଉଛି ଶୂନ୍ୟ କେତେ ଘର ପୂର୍ଣ୍ଣ
ହାୟ ହାୟ ହୁଏ, ଯହିଁ ଅଛି ଅନ୍ନ ପୂର୍ଣ୍ଣ
ନାହିଁ ଯହିଁ ମଙ୍ଗଳ ମଧୁର ଚିର ଶୁଭ ପୁଣ୍ୟ
କାଦଇ ଭାସଇ ଲୋତକେ ମଗ୍ନ ଅହା କେତେ ଯେ ତାଢ଼ । ୧ ।
ଜଗତ ପଥେ ଆସେ ଯାଏ କେତେ
ଧାର୍ ଏହିପରି ନିତ
ଅହରହ ନବ ନବ
ଆସ ଆହେ ମଙ୍ଗଳ ତୁମେ, ପୂର୍ଣ୍ଣ ତୁମେ
ଶ୍ୟାମ ସୁନ୍ଦର ଦଅ ଶୁଭ୍ର ସ୍ୱର୍ଗ ପ୍ରୀତି । ୨ ।



ଅହା କ୍ଲାନ୍ତ ତୁହି ଶୋଇ ଗଲୁ
ପଥେ ଭାଇ

ରାତ୍ରି ଅଧରେ ନିଦ ଭାଙ୍ଗିଲା
ଦିନ ଅଧରେ ଗଲୁ ଶୋଇ
ଉଠିଲା ବେଳକୁ ଦେଖିଲୁ ଭୁହ୍ନ
ଘରେ କେହି ନାହିଁ ବାହାରେ କେହି ନାହିଁ ।
ଗୋଧୂଳି ବେଳ ହେଉ ନାହିଁ ଆହୁରି
ଜନ୍ମ ଯାଉ ପକ୍ଷୀଏ ଉଠିଛନ୍ତି ମାତ୍ର
ଏହିକ୍ଷଣି ଦୂର ଯାଉ

ଯାହା'ର ପଡ଼େ ଗୋଟି ଗୋଟି
ଧାନ କୁଟେ ନାରୀ ଯୁବତୀ
ନିଦ ଆହୁରି ଭାଙ୍ଗି ନାହିଁ
ବେଳ ଆହୁରି ଦୂରି ଯାଇ ନାହିଁ
ସବୁ ଯାଇଛନ୍ତି ଶୂନ୍ୟ ଘରେ କେହି ନାହିଁ
ମୁଁ ଏକାକୀ ଯେଉଁଠି ରହିଛି ଭାଇ ।



କେତେ ଅହଙ୍କାର କେତେ ଅଭିମାନ
କେତେ ମୁହିଁ ମୁହିଁ ହୃଦୟରେ ଭାଇ ।
କରୁଣ ରାଗିଣୀ ବାଜେ ସଦା
କରୁଣ ସ୍ୱରରେ ଯେବେ ଶୂନ୍ୟନୀ ସହି । ୧ ।
ଥିବ ଗଣିଣି ରାବ ସ୍ୱର କୋଇଲି ସେହି
ଆଉ ପଥେ ପଥେ କେତେ ଥିଲନ୍ତି
ଏକକୁ ଅନେକ କରେଣି ମୁହିଁ । ୨ ।
ଶିଶିର ଭିଜ୍ଞ ରଜନୀ ପରେ
ଜାଗ୍ରତ ମୁଁ ଏକାକୀ ରେ
ନୀରବ ସ୍ୱପ୍ନ ଏକାକୀ ଥିବ ପଡ଼ି ରହି । ୩ ।
ସାଥି ସାଥି ପଥିକ ଅହଙ୍କାର ଭ୍ରମର ହୁଙ୍କାର ।

ଏବେ ଥାଉ ହୁଙ୍କାର ଫାଙ୍କି ସବୁ
ବୁଝିବୁ ପରେ ଭୁଲ । ୪ ।



ବନ୍ଦୀ ପକ୍ଷ କାନ୍ଦେ କେତେ
ଘନ ନବଘନକୁ ଚାହିଁ
ବନ୍ଧ ରହିଛି ପ୍ରିୟା ମୋର ପକ୍ଷୀ
ହାୟ ହାୟ କେଡ଼େ ଶୃଙ୍ଖ ହୋଇ ।
ଆଜି ବନ୍ଦେ ପକ୍ଷୀ ଶ୍ରାବଣୀ ଥ ସ
ନୋଚକ ଝଟକେ ଗଣ୍ଡ ବାହି । ୧ ।
ଯାମିନୀ ଶୋଭନ ଜୀବନ ମୋର ଅଶୋଭନ
ହୃଦେ ଘନସ୍ତନେ କେହି ନାହିଁ
ବିରହିଣୀ ସେହି ଅଛଇ ବସି ଚାହିଁ । ୨ ।
ଜୀବନ ସ୍ବପନ ବୀଣାଟି ଆଜି
ଝଙ୍କାର ନାହିଁ
ଛିନ୍ନ ହୋଇ ରହିଛି ପଡ଼ି
କନ୍ତୁ କି ଅଉ ନାହିଁ । ୩ ।
ବାନ୍ଧି ଦେବ କେଉଁ ଶିଳ୍ପୀ ସେ ମୋହନ
ମନ୍ଦିର ତାର
ଗୁଞ୍ଜରିବ ସ୍ବନର ମଧୁର ଆଉଥରେ ସେହି । ୪ ।



କ୍ଳାନ୍ତ ଆଜି ପଥିକ ମୁହିଁ
କ୍ଳାନ୍ତ ଆଜି ପଥ
କେହି ନାହିଁ ସାଥେ
ଦିବସ ଗଲା, ସନ୍ଧ୍ୟା ନେଲା
ଧଇର ବାହାରିଛି ମୁଁ ପଥେ

ସାଥୀ ମୋର କେହୁ ନାହିଁ
ଏକାକୀ ଚାଲିଚି ଘୁରେ
କାହିଁ ଯେବେ ମଧୁର ପ୍ରୀତି ଅନ୍ଧାରେ
କେହୁ ଯେବେ ରଖିବ ଧରି ମଧୁର ଗାନେ
ଡାକିବି ମୁଁ ତାକୁ ପ୍ରିୟ ନବଘନ କୋଳେ
ଏଥର ମୁହିଁ ଚଳିବି ଏକାକୀ ସୁପଥେ
ଅଛି ଖେଳି ଚାଲି ଗ୍ରୀଷ୍ମ ବସନ୍ତ
ପ୍ରାଣେ ବାଜିଲା ଘୋର ଅନନ୍ତ
ଏଥର ଧାନ୍ଦରେ ନାହିଁ ମନ
ଯାଇଁବା ମୁହିଁ ଅନନ୍ତେ ।

ଛଟକାଇ ବୋଲି ଛିନ୍ନ ଭିନ୍ନ କରି
ରଖି ଯାହାକୁ ଆସେ ଏବେ ଦ୍ୱାରେ
ପ୍ରାପ୍ତି ଭୂ କରୁଛି ଆଜି ସବୁ ପ୍ରାଣୀବର ॥
ଯେଉଁ ଭୁମିର ରକତର ଟିକିଏ
ସେହି ଭୁମିର ବୁକୁରେ ପ୍ରାପତି
କାହିଁକି ଆଜି ଏତେ ସ୍ଥାନମାନ ତାହାକୁ
ଦାନ କରି । ୧ ।

ଅନ୍ଧାର ଦଶେ ପଥେ ଯାଏ
ଜାଗାପୁ ଜୀବନ ଦାନ ଧାଏ
ତାହାକୁ ପୁଣି ନ ନେଲେ ସାଙ୍ଗେ
ମରଣ ଯୋଉବ ହୃଦ୍ର ଭିତର । ୨ ।
ଜୟ ଜଗଦୀଶ ଜୟ ଜଗଦୀଶ
ଏ ଅନ୍ୟାୟ ଅପେକ୍ଷା ନ କଲା କିସ
କୃଷକଙ୍କୁ ଅନ୍ଧ କରି ଦେଲୁ ଯିଏ
ସବୁ ଧନ ଦେଲୁ ଯାଇ । ୩ ।



ଈଶ୍ୱରଙ୍କ ପାଇଁ ନ କରି ପାରେଁ କିଛି ?
ଅଥଚ ଈଶ୍ୱରଙ୍କୁ ବାହାରିଲେ ଯେନ୍ତୁ
ଭୂଇଁ ଯୋଡ଼ି ବେଷ
ଦେଲେ ଗାଳି ନ ବଲେ ସେ ନରେ
କହୁ ଏକ ଦୂର୍‌ଦେଶ ।
ମାନବର ଭ୍ରାନ୍ତି, ମାନବର ଭୀତି,
ମାନବର ଚନ୍ଦ୍ରାନ୍ତ ଅବା ଅଛି
ଯାହା ହେଉ ମାନବ ଯେ ମାନବ କର୍ତ୍ତୃକ
ହୋଉଛି ଶେଷ
କିଏ ସହିବ ଏ ଅପମାନ ଏ ଅପଶୋଷ । ୧ ।
ଈଶ୍ୱରଙ୍କ ଭାଇ ମାନବ ଭାଇ
ହିନ୍ଦୁ ମୁସଲମାନ ଖ୍ରୀଷ୍ଟିଆନ ଯେତେ
ସବୁଙ୍କେ ଦେଖ ପ୍ରେମ ଦୃଷ୍ଟିରେ ସାହାଯ୍ୟ କର
ଥିଲେ ଯେ ପଡ଼ିଥିବା ରହି
ଏଇକ ଭାଷା ଏଇକ ମାଗୁଣି ଚର ଅବଶେଷ । ୨ ।



ଜୀବନ ପଥର ଏହି ସୀମାନା
ଶେଷ ହେବ କେବେ ମୋହର
ଯିବ ଅବା କେତେ ଦୂର
ଥକିଯିବ ନିଶ୍ୱାସ ମୋର
ଫାଟି ଯିବ ଧଡ଼ି ।
ଏକ ନିମେଷେ ଅନେକ ପରୁରମ୍ଭ
ଥକି କି ଯିବ ସର ମାଡର ଭୋର । ୧ ।

ଯାହାର ପଥେ ଅସିଣ ମୁହିଁ
ଜ୍ୟୋତ୍ସ୍ନା ଅଣିଛୁ ବନ୍ଧି
ଧନ୍ୟ କହିବ ସେହି ମୋତେ ବାର ବାର । ୨ ।
ଯାହାର ସ୍ୱପ୍ନ ପଥେ
ଅନ୍ଧାର କରି ଦେଇଛୁ ସବୁ ଘୋଡ଼ାଇ
ସେହି ମୋତେ ଦୁଃଖ କହିବ
ଅଭିସମ୍ପାତିବ ଅନେକ ଥର । ୩ ।



ବ୍ୟଥା ଭରା ଭରା ଏ ଜୀବନେ
ଦିବସ ନେଲି ଦିନ ଦିପହର ସାମ୍ନାରେ
ଆଜ ଭୁଲିଛି ବସି ଏହା
ହାୟ ! ହାୟ ! ଧୂମଶିଖା ଉଠେ ଏହି
କରେ ହା ହା ।
ସବୁ ଯିବ ପୋଡ଼ି
ଜୀବ ଯିବ ସଢ଼ି
ରହିବ ନାହିଁ ଆଉ ମଦଣିଆ
ଅବା ବ୍ୟଭିଚାର କ୍ଷୁଧା
ଶେଷ ଦାବାନଳ ଶିଖାରେ ସବୁ ଯାହା
ଦଗ୍ଧ ହେବ ବ୍ୟର୍ଥତାର ସକଳ ବାକି ଯାହା । ୧ ।
ଅଜ ଦିନେ ସେହି କଥା
ଆସଇ ମନେ
କିଏ ରହିଛି କୁହ ମୋତେ ବ୍ୟର୍ଥତାର
ଅଗ୍ନି ଜାଳିବ କରିବ ସ୍ୱାହା । ୨ ।



ଏତେ ଦିନ ରହିଲ ତୁମେ ଏହି ଘରେ
ନୂଆ ଯେବେ ଆସିଥିଲ
କେତେ ଭୟ କେତେ ସାବଧାନରେ ।
ଆଜ ନାହିଁ ଭୟ
ନାହିଁ ସେ ସଂଶୟ
ଏହି ଘରେ ସକଳ ପ୍ରୀତି ସକଳ ଦୁଃଖଧାରେ । ୧ ।
ଜୀବନ ଆପଣାର
ଦେଲ ମିଶାଇ ଶତ ସହସ୍ରେ । ୨ ।
ହୃଦୟ ଯେବେ ତପ୍ତ
ହୋଇଛି ଭୁଲିଅ ତହିଁ
ସକଳେ ସେବ ତୁମକୁ ସେବନ୍ତି
ଦୁଃଖ ଆସେ ଯେବେ ଏଠାରେ ସେଠାରେ । ୩ ।
ଏହି ଛନ୍ଦା ଏହି ବନ୍ଧା ବଡ଼ ଅଚମ୍ଭିତ
କାହାକୁ କେବେ କହିବ ଧୀରେ । ୪ ।



ପଡ଼ି ରହିଲି ଏକାକୀ ମୁହିଁ
ବିଜନ ରାତିରେ
ମଳୟ ବହୁଥିଲା ସଧୀରେ
ତାରକା ଥିଲେ ସାଥୀ ରେ ।
କେତେ ଲୋକ କାହିଁ ଯାଇଥିବେ
କେତେ ପଥ ବାହି
ଘଡ଼ି ଲହିଅଛି ମୁହିଁ ଏକାକୀ କସ ଭାବରେ । ୧ ।
କେବେବେଳେ କେଉଁ ଢେଉ ଉଠୁଛି ଏଥି
ଜଗତର ଜଳ କଲ୍ଲୋଳେ
ହଜି ଯାଉଅଛି ସେହି ।

ଖରା ବର୍ଷା କ୍ଷୀଣ ପ୍ରଖର ଜଳେ
ସ୍ମରନ୍ତୁ ମୋର ନାହିଁ ଗୋ ବାହାରେ
ସେ ଯେ ଯାଇଛନ୍ତି ଦଳି କେଉଁଠି
କପଟ ଛାଡ଼ା ମୁଁ ନ ଜାଣେ ରେ । ୨ ।



ପ୍ରଭାତ ହେଲା ଅସି
ରଥ ଚକ୍ରର ବଧ୍ନି ଶୁଣି
ଦଣ୍ଡଇ ଏଥର ଧୂରୁବ ଭଲେ
ଆସିଛ କି କେହି ନେବାକୁ ମୋତେ
ସେହି ରଥରେ ।
ଜୀବନ ମୋର ବାହି ବଣା
କେହି କି ମୋତେ କହନ୍ତୁ ନାହିଁ
କେଉଁଠି ଯିବ କାହିଁକି ପଡ଼ିଛ ଏଥିରେ । ୧ ।
ସାଗର ବୁକେ ଅନନ୍ତ କାଳ ଧରି ଯେ
ଠେକଇ ଫଣା ଗ୍ରାସିବ କାହାକୁ
ସେ କାଳଗ୍ରାସୀ ରେ । ୨ ।
ମକ୍ଷିକା ସମ ଜୀବନ ମମ
କ୍ଷୁଦ୍ର ତାହାଠାରୁ ଅବା ଏହି ଜନ
ମାଗେ କରୁଣା କାହାର ମୁଁ ଅଛି ଅଭାଗା
ନେଇ ଯାଅ ହାତ ଧରି ମୋତେ ରେ । ୩ ।



କେହି ପାଇଛନ୍ତି ଧନ ନିବିଡ଼ ଭାବେ ଏତେ
ଆପଣାର ପ୍ରୀତି ଜଗତର ସକଳ ସାଥେ
ବୃକ୍ଷ କୀଟ ପଶୁ ପକ୍ଷୀ ଆପଣାର
ସକଳର କୁ କା କି ଠେଁ ଠେଁ ସବୁର ମଧୁର ।

ଆଉ ମୁଁ ପାଇ ନ କାହାର ସ୍ୱର
ମିଳାଇ ଆପଣା ସାଥିର
ଏକାକୀ ମୁହିଁ ଚାଲିଛୁ ବାହି
ଆପଣା ପଥ
କେହି ଶୁଣୁ ନ ଶୁଣୁ, କେହି ଗୁଣୁ ନ ଗୁଣୁ
ବ୍ୟର୍ଥ ହୋଇଲା କ ଏବେ ଜୀବନ ମୋହର । ୧ ।
ହେଉ ହେଉ ଯାହା ହେବାର
ବେଲ ଅଉ ନାହିଁ ଅମିଳଣି ବଦାସ୍ୱର
କରୁଣ ବନ୍ଦଣ୍ଡ ସ୍ପନ୍ଦେ ଏଥର ଦିଗନ୍ତରେ
ଜଗତ ଅନ୍ତରା ଅଭାଗୀ ମୁହିଁରେ । ୨ ।



ମନ ମନ୍ଦିର ରେଖା
ଛାଡ଼ିଛି ଦେଲି ଦେଖା
ପରଶେ ତାହାର ବ୍ୟାକୁଳ ହୃଦୟ
ଚାଲିଗଲା ସେ କାହିଁ ନାହିଁ ଆଉ ଦେଖା ।
ଅସିଥିଲା ଯଉବନେ ନଶୀଥ ଗହନେ
ଉଡ଼ଳା କରିଥିଲା ମନ
ବନ୍ଧୁଥିଲା ରାତ୍ରି ଶାଓ ଘନ ଘନ
ନବଢ଼ କାନନ ବର୍ଷା ଧୋରେ ନନ୍ଦିତ ସକଳ
ତାର ଆଖିରେ ନାହିଁ କଦ ଏକା ।
ଅଥଯ୍ୟ କରିଥିଲା ପୁଣି କେତେ କେତେ କାଳ
ସେହି ରୂପସୀ ଅପରୂପ ଧରି
ଯଥଣ ଏହି ଜଗତର ଅତୃପ୍ତି ଭିଲିର
ତାହାକୁ ହିଁ ଜଣା ସବୁ କଥା, ତାହିଁକ
ବସନ୍ତ, ବର୍ଷା, କାହିଁକ ମଧୁରେଖା । ୨ ।



ସାରା ଜୀବନର ତପସ୍ୟା ଅଜି
ଦେବୁ ନିଙ୍ଗ କରି
କାହିଁକି ମନ ହୋଇ ଏତେ ଉଚ୍ଛନ୍ନ
କପାଳ ହେବୁ ଏପରି ।
ବେଣୁର କଂସ୍ୱନ, ଅଟେ ଗା କର୍ମ ବିମୋହନ
ହୃଦୟ ମଝିରେ କରେ କପଟ କପଟ । ୧ ।
ସିନ୍ଧୁ ତଟରେ ବସି ଭୁଲି ବ ଉତ୍ସୁକ
ଅଜି ହେଉ କି ଏତେ ଅପୂର୍ବ କଣ୍ଠ ର ମୋହର
ସବୁ କ ଯିବ ଭାସି, ସବୁ କ ଦେବୁ ବୁଡ଼ାଇ,
ଅଜି କାହାରେ ରସେ ଭୁ ହେ ଇନ୍ଦୁ ବାର ବାରଥ ଯେପରି ।
ପଥ ଭୁଲିଲୁ ଅଜି ଏତେବେଳେ
ଆଉ କ ପାଇବୁ ଫେରି ବାଟ
ଭାବିବୁ ବସି ଜୀବନ ଶେଷଠା ରେ ଅଣ୍ଟେ
ଅଜି କାହିଁ କ ଛେଦିଲୁ ଅମୂଲ୍ୟ ରତନ ସାର ॥



ସ୍ୱରର ସ୍ୱର ଯେ ସେହି ଯେ ମଧୁର
ପାଗଳ ହେଲା ପାଇବ ବୋଲି ତାକୁ
ଝାସ୍ୟାମ ବୁଡ଼ା ।
ଜୀବନ ସ୍ୱରର ସ୍ୱର ଯେ
ସେହି ଯେ କୃଷ୍ଣମଣି
ତାହାକୁ ପାଇଲେ ଅନ୍ଧାର ଯିବ ଫାଟିବ ଫସଲ । ୧।
ଭିତରେ ଅଛୁ ବାହାରେ ଦେଖୁଛୁ ସବୁ ଠେଲି
ସ୍ୱରସ ନାଗର ରସ ସାଗର ଭିତରେ
ଅପଣାକୁ ବୁଡ଼ା । ୨ ।
ବକ୍ଷ କାହାର ଉଚ୍ଚ ପୟୋଧର
ଆକର୍ଷଣ ସେ ମାତର

ସକଳ ଜଳେ ସକଳ ଘଟରେ ଅଛ
ବିନା ସେହି ଅମୀୟ ପାନ । ୬ ।



ସକଳ ରେଖାର ସେପାରେ
ଯେ ଅଛ ଡୁବି ଅମୃତ ଜଳାବ୍ଧିରେ
ସେହି ସେ ଏକା ବୁଝିଅଛ
ନିଖିଳ ବିଶ୍ୱ ସ୍ଥିର ସେ ଯେ ସୁନ୍ଦର ରେ ।
ଅଛି ଏପାରେ ଖାଲି କଲ୍ଲୋଳ
ନିନ୍ଦା, ବ୍ୟାଧି, ଅପବିତ୍ର କଲରୋଳ ।
ଦ ଦିନ ପାଇଁ କି ଅଶାନ୍ତ ବାୟୁ ବାୟୁ ରେ । ୧
କାହିଁକି ପଶିଲି ଏହି ଜଙ୍ଗଲେ
କିଏ ଅଣିଲା ଏଥି ମୋତେ
ଥକି ଗଲି ବାଟ ଚାଲି ଚାଲି କଣ୍ଟା ବୋଦ୍ଧିଛି
ବନ୍ଧୁ ଏହି ପାଙ୍କରେ । ୨ ।
ଦୁଃଖୀର ଅଖି ଦେଖି ଥରେ
ଜୀବନ ନେବି ମୁହିଁ
ସାନ୍ତ୍ୱନା ଦେବି ଯେତେ ପାରେ
ଏତିକି ସାର ଏହି ମିଛ ମାୟା ସଂସାରେ । ୩ ।



ଉତ୍କଳ ଭୂମି ପବିତ୍ର କରି
ଜନ୍ମିଥିଲେ ଯେତେ ନରନାରୀ
ଧନ୍ୟ କରି ଏହି ଭୂମି ଯାଇଛନ୍ତି ଚାଲି
(ଅଙ୍କ) ସକଳ ନାମ ଧନ୍ୟ କର ଧନ୍ୟ ରେ
ହେ ନବାଗତ ଉତ୍କଳୀ ଜନ
ତୁମ୍ଭେ ହେ ।

ଅରୁଣ ଆଲୋକେ ଫୁଟି
ଉଠିଲାଣି ଉତ୍କଳ ମହିମା ଛବି
ଉଜ୍ଜ୍ୱଳ ଉଠେ ଦେଖ ଅତୀତେ
କେତେ ଅପୂର୍ବ ନର ନାରୀ
ଗାଅ ଧନ୍ୟ ଉତ୍କଳ ଧନ୍ୟ ଏ ମହୀ
ଗାଅ ବନ୍ଦେ ହେ । ୧ ।
ବାଜୁ ଶଙ୍ଖ, ଘଣ୍ଟା, ମଙ୍ଗଳ ମନ୍ଦିରୀ
ଆନନ୍ଦ
ସକଳେ ଉଡ଼ାଅ କୀର୍ତ୍ତି ଧ୍ୱଜା ହାତେ ଧର
ଗୃହେ ହେ । ୨ ।



ଉତ୍କଳ ଭୂମି କଳିଙ୍ଗ ଓଡ୍ର, ଏହି
ବର୍ମା ଯାଭା ସିଂହଳ ଯାଇଥିଲା ବାହି
ଅପଣା ତରୀ ଅସଂଖ୍ୟ ତରୀ
ଉଡ଼ାଇ ଜୟକେତନ ବାନା
ଆଜ ସେ ଉତ୍କଳେ ପଶୁରେ ମୁଁ କାହିଁ କାହିଁ ।
ଶୁଷ୍କ ଯେତେ ପତ୍ର ସମ
ଛିନ୍ନ ଯେତେ ମୃଦୁ ମୃଣାଳ,
ମୃତ ଯେତେ ଉତ୍କଳ ଶରୀର
ନାହିଁ ଶକ୍ତି, ନାହିଁ ବୀର୍ଯ୍ୟ, ନାହିଁ ଦମ୍ଭ,
କିଛି ନାହିଁ । ୧ ।
ନଷ୍ଟଳ ନଷ୍ଟଭ ନର୍ତ୍ତିଯାଉଛି
ନବୀନ ଉତ୍କଳ କାହିଁ ? ମିଥ୍ୟା କଥା ନାହିଁ
ନାହିଁ । ୨ ।
କଳହ କୋଲାହଳ ଘୃଣ୍ୟ ହେଲ
ଗ୍ଲାନି, ଲଜ୍ଜା, ଅପମାନ ଶତଭାର

ଶକ୍ତି କାହିଁ ? ଦୀପ୍ତି କାହିଁ ? ପ୍ରୀତି କାହିଁ ?
ନାହିଁ ନାହିଁ । ୩ ।



କବି ! ଶେଷ କର ତୁମ୍ଭ ଗୀତ
ଢାଳଲଣି ନାହିଁ ଅମୃତ
ଯେତେ ଢାଳବାକୁ ଗଲ ହୋଇଗଲା ବିଷ
ସେତ । ୨ ।

ଉତ୍କଳ ଧର୍ମ୍ମ ବଡ ହୀନା
ବଡ଼ ଅର୍ଥୀନା
କେହି କ ପାରବେ ନାହିଁ ତାହାକୁ
ଉଚ୍ଚ ଶିଖରେ କର ସ୍ଥାପିତ । ୧ ।
ନତ ହୋଇଅଛି ମଥା, ସକଳେ ଘୃଣନ୍ତି ଯଥା,
ପଥପ୍ରଦର୍ଶକ ଅଗେଇ ଦେବ କଏ ସେ ବାଟ । ୨ ।
ଯେ ଯହୁଁ ଅଇଲେ ଉତ୍କଳର ଭାଗେ
ସେହି ଚିର ମସୀ ରେଖା, ସକଳେ
ଦେଖି ଯେ ଦୁଃଖିତ । ୩ ।
ନ ଲୁହ ଆଉ ନା, ଏଥର, ଉତ୍କଳ ଗୌରବଶେଖର
ହେବାକୁ ଅମ୍ଭେ ହେବୁଁ ଚିର ଚେଷ୍ଟିତ । ୪ ।



କାମନାର ନୂପୁର ବାଜେ ଅନ୍ତରଙ୍ଗ
କରଇ ଝଙ୍କାର
ଯହିଁ ଯାଏଁ ଗୁଞ୍ଜରଣେ ଅଳିର
ବ୍ୟସ୍ତ ହୁଏ ଫୁଲ ହାର
ଧାଏଁ ଶ୍ରାବଣେ ଝଡ଼ ଅସେ ଯେବେ ବାରିଦ
ଫୁଲ ଉଠେ ଅଙ୍କୁର, ପ୍ରେମ ଗଦଗଦ

ଅନ୍ତରେ ପୂରାଇ କେତେ ବାସନା
ଶୁଣିଅଛି ମୁହିଁ ନାନା ଧଙ୍କେ ଅନା।
କେବେ ହେବ ମୋର ସବୁ ବୁଝା
ନୂପୁରର କଣି କଣି କେବେ ହେବ ରଝା
ଅଖଣ୍ଡ ଜ୍ୟୋତ୍ସ୍ନା ଭରବ ମୋର ଦଗନ୍ତ
ରହିବ ଚିର ପ୍ରୀତି ଶୁଭ୍ରୋଜ୍ଜ୍ୱଳ ଶାନ୍ତ।



ମାଆ ମୋର ଛଡ଼ି ଯାଇଥିଲ ଯେବେ ମୋତେ
କୋଳେ କୋଳେ ମୋତେ ରଖିଥିଲ ଭଲ ମାଆ ମୋର
କେତେ ଦନ ରାତି କରିଅଛି ଅଳ ସତେ
ଦେଇ ଅଛି ସେହି ସବୁ ସହି ମାଗି ଅଛି ଯାହା ଏହି କର
କେତେ ଚୁମ ଖାଇ ଧୂଳି ଗାଲ ମୋର କରିଅଛି ଲାଲ
ସେହି ମୋର ଭଲ ମାଆ, ମାଆ ଭୁହି ଥିଲୁ ନାହିଁ ଯେବେ ଘର
ଆଖି ପାଣି ମାର ସେହି ନଳ ଆଖିରେ ଯେ ଭଲ ମାଆ
ରଖିଥିଲ ଏତେ ଯତ୍ନେ ସହୁ ଥିଲ ସବୁ ସେହି ମାଆ ମୋର
ମାରିଅଛି ମୋତେ କଥା ଶୁଣି ନାହିଁ ଯେବେ ମୁଁ ତାହାର
ପୁଣି କେତେ ଯତ୍ନେ ନଜ ହାତେ ସଜାଇ ଖୁଆଇ ଦେଇଛି ସେହି
ମାଆ ମୋର ସେହି ପୂଜନୀୟା ଚିର ପୂଜନୀୟା ମାଆ ମୋର
ମରମେ ତାହାର ଅସୀମ ଦୟା ଯେ ମୋତେ ସେ ଛଡ଼ି ନ ପାରେ
ଚରଣ ତାହାର ପୂଜିବ ମୁହିଁ ଗୋ ଏ ଜୀବନ ଥିବା ଯାଏ ଯାକର
ଭଲ ମାଆ ମୋର ମାଆନ୍ତୁ ତୋହର ମୋହର ଭଲ ମାଆ ସକଳର
ସେ ଯେ ଅତି ସ୍ନେହଶୀଳା ସକଳେ କହଇ ସିନେହ ଅତି ସୁନ୍ଦର
ଆମ ମାଆ ପୂଜିବା ଭଲ ମା ଚରଣ ପୂଜାଇ ଭୁହି ମୁହିଁ
ଭଲ ବାବା ଆସିବେ ଯେବେ ଗୋ ଦେଖିବେ ସୁଖରେ ଅଛନ୍ତି
ଭଲ ମାଆ ଆମ୍ଭର।



ଆଜି ମନେ ପଡ଼ୁଛି ମୋର
ଓଲନ୍ଦା ସାହି ନଈରେ ପହଁରୁ ଯେତେ ପ୍ରକାର ।
ନଈ ନାଳ ଯେବେ ଭରି ଯାଉଥିଲା
ବରଷା ବାଟରେ ପୂରି
ଡେଇଁ ଥିଲୁଁ କେତେ ଡେଲି ଲଗାଇ
ଦାନ ଦାପନ୍ଦର ଧରି ।
ଦୁଃଖୀ, ଜଗନ୍ନାଥ, ଉଦ୍ଦଆ,
ଅନୁରି ଆନ୍ଦୁରି କେତେ
ମରି ମଜି ଗଲେଣି ଅଛନ୍ତି ଅବା କେତେ
ସବୁରି ସବୁରି ସାଥି
ଖେଳୁଥିଲି, ବୁଡ଼ୁଥିଲି, ସବୁ ଭୁଲି, ଆଜି
କେହି ନାହାନ୍ତି ଏଠି ।
ଓଲନ୍ଦା ସାହି ନଈ ନାଳ ବି ଯାଇଛି ଶୁଖି ତେଣେ ।
ନାହିଁ ଆନନ୍ଦ, ନାହିଁ ଗୀତ,
ଓଲନ୍ଦା ସାହି ଆଜି ଶୀରହତ
କୁଳୁ କୁଳୁ କରି ନ ବହେ ନଦୀ
ଯାଇଛି ସରି ଯେମନ୍ତେ ସରତ ।
ଅନାଟେ ତହିଁ ଜଳୁ ଜଳୁଅ ଜଳୁଛି ସତ
ବଣ ବୁଦାରେ ଭୂତ ଭୟ ଅଛି ଅକ୍ଷତ
ମାତ୍ର ନାହିଁ ମୋର ସେ ସୁଖ ତହିଁ ଅଛି କେବଳ ସ୍ମୃତି ।



ମଧୁ ଜୀବନର ଅଳସ ଜଳେ ଗୀତ ଦଗେ
ଆମ୍ଭର
ସ୍ୱପନର ସବୁ ସୁଖ ଗୀତଅଢ଼େ ଟକଟିକ
ଉତ୍କଳୀ

ନୀରବତା ଅନ୍ଧକାରୁ ଆଲୁଅର ରେଉ
ଭଲ ହଏ ଆଖି ମୋର ଝୁଲଚି ହଏ ବିପୁଳ
ଚାରିଅଡ଼େ ଖେଳେ ଜୀବନ
ଧରିବାକୁ ମୋହର ମନ
ମହାଜୀବନର ଆଲୁଅ କଲେ କି ସୁନ୍ଦର ମୋହନ
ମନର ଦୂରବୀଣେ ସପନର ଗାଲିକେ
ଆସେ ପାଶେ ଯାଇ
ଦେଖି ନଏ ଛବି ତାର ମନ ପୂରେ ଯାଇଁ
ମନ କରେ ହାଇଁ ପାଇଁ
ମନ ପୂରେ ନାହିଁ
ଧରି ରଖିବା ପାଇଁ ମନ କରେ ହାଇଁ ପାଇଁ
ରହସ୍ୟ ବନାଣୀ ଭେଦେ ଯାଉଥାଏ ଧାଇଁ
ଯାଉଥାଏଁ ମୁହିଁ ଯେବେ ଧାଇଁ
ପ୍ରାଣର ବୀଣାଟି କିଏ ବଜାଏ ଯାହା ରହି
ସେହି ମୋର ପରମ ଜନ ସେହି ମୋର ଈଶ୍ୱର
ସେହି କରି ରହିଛନ୍ତି ଜଗତ ମୋର ଉଜ୍ଜ୍ୱଳ ।



ଲୋହିତ୍ୟା ନଦୀର କୂଳେ
ଯୁଗେ ଯୁଗେ ଅତୀତ ଯୁଗେ
ଜନମିଥିଲେ ଅନୋମ ରମଣୀ ରତ୍ନ ଶିରୋମଣି
ଉଷା, ହିଡ଼ିମ୍ବା, ଉଲୁପୀ, ରୁକ୍ମିଣୀ
ବୀରଭୋଗ୍ୟା ଥିଲେ ସେହି ଭାମିନୀ;
ଅନିରୁଦ୍ଧ, ଭୀମ, ଅର୍ଜ୍ଜୁନ, କୃଷ୍ଣ
ଭୋଗିଥିଲେ ସେହି ରମଣୀ

ତାହାର କୂଳରେ ବସି, ଉତ୍କଳରୁ ଆସି,
ଭରିଅଛୁ ମୂର୍ତ୍ତି
ଉତ୍କଳର କୀରତ କେତେ ଯେ ଭାବର ମୂରତ
ଗଢ଼ିଅଛୁ ଏହି
ଭାଷା, ଭାବ ଐକ୍ୟ ଆସାମର ସାଥେ
ଉତ୍କଳର ଜୀବନ
ଶ୍ରଦ୍ଧା ଅପୂର୍ବେ ଜାଣନ୍ତି ଆସାମବାସୀ ଗଣ
ଆଜ ଲୁବ୍ଧ ପ୍ରାଣ ମୋର ସୁଖ ଶାନ୍ତି ଲାଗି
ଆସାମେ ଆସି ଆସାମ ଭାଇ ଭଗିନୀ ଠାରେ ମାଗି
କରୁଅଛୁ ଜଗନ୍ନାଥେ ସ୍ମରଣ
ରକ୍ଷନ୍ତୁ ସକଳେ ସେହି ତାଙ୍କ ଚରଣ ।



ସଖୀ ମୋର ସେହୁ, ଅଭାବେ ତାର
କାନେ ଦରଣୀ, କାନ୍ଦେ ଗାଈ
ମଣିଷ, ବାଛୁରି ଅରୁ ଯେତେ ହାଇ ହାଇ !
ମାଛବାଲୀ ତାକୁ କହୁଛୁ ଝିଅ
ତାହାର ହାତରେ ବକବ ମାଛ
ନଅ ବା ନ ନଅ
" ମାଗୁଣୀ " ତାକୁ କହୁଛୁ ଝିଅ
ତାହାର ହାତରେ ବନ୍ଧନ କରବ
ସଖି ମୋର ତାର ଏତେ ପ୍ରିୟ ।
ଅନ୍ଧୁଣୀ ବୁଢ଼ୀ ଠୁକୁ ଠୁକୁ କର
ଅଧିବ ଯେବେ ଘର
ଦନ ଦପଦର
ରଖିଥିବ ସଜାଇ ତାହା ପାଇଁ

ପଖାଳ ଗରମ ଯାହା ରୁଚି ।

ସେବା କରୁଥିବ ବାଛୁରି ଗାଈ

ସ୍ୱାମୀ, ଶାଶୁ ଶ୍ୱଶୁର, ଆଉ ତାର

ଝିଅର ଝିଅ ପୁଅ ।

କେହି ଆସିଲେ ଅତିଥି ଘର

ହୋଇବ ସେହି ଅତି ଉଚ୍ଚ ତର

କିଛି ନ ବୁଝିବ ସେହି ନିଜ ସୁଖ ବ୍ୟାପାର

ଖାଇବା ପିଇବା ନା ନିଜ ଅଳଂକାର

ମୂର୍ତ୍ତି କେବଳ ରହିଥିବ ସେ

ଆପଣା ଘର ଭଣ୍ଡାର

ଏତିକି ହେଲେ ଅତିଥି ଆସିଲେ

କେତେ ତରତରରେ ରାନ୍ଧି ବାଢ଼ି ଦେବ ସେ

ସବୁ ପ୍ରକାର ।

ସତୀ ମୋର ସେହି, ଅପୂର୍ବ ଜୀବନ ଦେଇଛି ଯାହି ।

ସବୁ ଦୁଃଖ ସହି, ଅମର ମୁଖକୁ ଚାହିଁ

କାନ୍ଦିଛି କେତେ ସେ ମୋହର ପାଇଁ

ରୋଗରେ, ଅଧର୍ମରେ, ଯେବେ ଯେବେ ପଡ଼ିଛି ମୁହିଁ

ତଥାପି ମୋତେ ସେବିଛି ଯେତେ, ପ୍ରାର୍ଥନା କରିଛି

ମୋହର ପାଇଁ ।

ଏତେ ପ୍ରିୟ ମୋର ସେ, ତଥାପି ପାଷଣ୍ଡ ମୁହିଁ ।

ତାହା ପାଇଁ ଏତେ ଭାବଇ ନାହିଁ ।

ତାହାଙ୍କ ପାଇଁ ମୋର ଘରଦୁଆର

ତାହାର ଯୋଗୁଁ ଅଜ ବାଡ଼ ବଗିଚା ଉଦ୍ଭିଦ

ବସନ୍ତ କାଳରେ ସେହି ମୋର କୋକିଳ ଅନ୍ତରର

ଶୀତରେ, ଶ୍ରାବଣରେ, ଅବା ଦଗ୍ଧ ଦୀର୍ଘ ଗ୍ରୀଷ୍ମରେ

ସେହି ମୋହର ହୃଦୟର କୁସୁମ ଅବା ଚନ୍ଦନ
ଯେବେ ପାପୀ ହେଲେ ଏତକ କଥା କି ମୁଁ ବୁଝି
ନ ପାରଇଁ ।



ଓଡ଼ିଶା ମୋର ଦେଶ ଓଡ଼ିଶା ମୋର ଦେଶ
ଗରବ ଗୁରୁବା ଅଛନ୍ତି ଯେତେ ସେହି ମୋର ଇଶ
ଚନ୍ଦନଚିହ୍ନ ନୀଳଗିରି ମହେନ୍ଦ୍ର ଅବ ଯେତେ
ଅଛନ୍ତି କାଳ କାଳରୁ ସାକ୍ଷୀ ସେ ତ ମୋତେ
ଓଡ଼ିଶା ମୋର ଜନନୀ ଓଡ଼ିଶା ମୋର ଦେଶ
ଭୁବନ ଇଶ୍ୱର ସାକ୍ଷୀ ଗୋପାଳ ଜଗନ୍ନାଥ ଶେଷ
ଅନ୍ୟ ଅଛନ୍ତି ଅନେକ ସାକ୍ଷୀ ଦେଖିବ କେତେ କହ
ମାତା ମୋର ସାକ୍ଷୀ ପିତା ମୋର ସାକ୍ଷୀ ସାକ୍ଷୀ
ମୋର ଦେହ
ଏହି ଦେଶରେ ଜନମ ମୋହର, ଓଡ଼ିଶା ମୋର ଦେଶ
ଏହି ଦେଶରେ ଅଛି ମୋର ପୁଅ ଝିଅ ଭାଇ ଭଗିନୀ
ଅଉ ଯେତେ
ସକଳ ସାଥିରେ ରହିବ ସୁଖରେ ପ୍ରେମ କର କେତେ
କେତେ
ଜୀବନ ଦେବ ବଢାଇ ସେବା କର କର ଏହି
ଦେଶ ପାଇଁ
କେହି ଶୁଣନ୍ତୁ ଅବା ନ ଶୁଣନ୍ତୁ କର ଗୁଣଗାଇବ
ଅପଣା କାମ ପାଇଁ
ବୁଢ଼ୀ ବୁଢ଼ୀର ଘେନ ଆଶୀର୍ବାଦ, ଜନ ବୟସ ବନ୍ଧୁ
ଜନର ଜବାବ

ଚାହିଁ ରହିଥିବ ପିଲା ପିଲିଙ୍କର ଆଖିକୁ ମୁହିଁ, ସରଳ
ସେ ଯେ ନିର୍ବିବାଦ
ଭକତି ପ୍ରଣତ ସାଷ୍ଟାଙ୍ଗ ପ୍ରଣିପାତ କରି ରହିବ ଦଣ୍ଡବତେ
ମହାନଦୀ କାଠଯୋଡ଼ି ସାଳନ୍ଦୀ ବଇଙ୍ଗ ଆଉ ନଦୀ
ଚତୁର୍ଦ୍ଦିଗେ
ସବୁରି ଦେଇବ ଆଶୀର୍ବାଦ, ଚରଣ ରଜ ମଥାରେ
ମାରିବ
ବଡ଼ ଦାଣ୍ଡ ଧୂଳିରେ ସକଳ ପାପ ଚିରକାଳ ପାଇଁ
ଧୋଇଣ ଦେବ
ଓଡ଼ିଶା ମୋହର ଦେଶ,      ଖାଇବାକୁ ଅନ୍ନ ନାହିଁ
ସକଳେ ହତାଶ
ବୁଝିବ ବୁଝାଇବ, ମାରିବ      କରିବ ଚେଷ୍ଟା
ରହିବ ଯାହା ଅବଶେଷ
ଚରଣେ ଜଗନ୍ନାଥର ଦେବ ଥୋଇ
କହିବ ପିତା ରଖିଲେ ରଖ ନ ରଖିଲେ କର ଶେଷ
ଏହି ଦେଶର ଗଢ଼ିଛି କେତେ କୀର୍ତ୍ତି ରହିଛି ଦେଖ
ଏହି ଦେଶର ସଭ୍ୟତା ତ ଯାଇଛି ପ୍ରସାରି ଇତିହାସ ନିରେଖ
ଯାଇଛି ସବୁ ଆଉ ନାହିଁ କିଛି, ଅଛନ୍ତି ତଥାପି
କଙ୍କାଳ ଭିତରେ ପ୍ରେମର ମୂରତି,
ସେହି ମୋର ଦେଶ, ଓଡ଼ିଶା ଦେଶ,, ତାହାକୁ କରିବ ସେବା,
ହାଟ ହାଟ ଗନ୍ତି ବୁଲିବ, ସକଳ ଚରଣ ଧରି ମାଗିବ ଅବା
ଭିକ୍ଷା କରିବ ମୋହର ଦେଶର ଭାଇ ଭଉଣୀ ଯେତେ
ଅନାହାରେ କରାଳ ଗ୍ରାସରୁ ଶତେ ଶତେ ।



କେତେ କାଳ ସେ ତରୁଣୀର ନବ ତରୁଣୀର ମାୟା
ଆଜ ଏତେ ଦିନ ପରେ ସବୁ ହୋଇଛି ଛାୟା
ସେ ଯେ ରଚିଥିଲା ଶ୍ରାବଣର ଘୋର ଚଢ଼ ସମ୍ଭାର
ସେ ଯେ ପାଗଳୀ ଉଡ଼ାଇ ଦେଇଥିଲା ସ୍ନେହ ସମ୍ଭାର
ଅତୀତର କ୍ଷୀଣ ରେଖା ଆଜ ଉଠିଲା ଜାଗି
ଶରତର ନବ ଆଗମନେ ଦେବଦେଶର ମରତ ଭ୍ରମଣ ଲାଗି
ଆସିଛି କି ସେ ଝିଅଟାର ଆଜ ତାଙ୍କରି ଗହଣେ
କଜଳପତିର କଜଳରେଖା ତାହାର କି ଅଛେ ସ୍ମରଣେ
ଗୀତ ଗାଇ ଗାଇ ଆପଣା ମନେ ଶୁଣୁଁ ଥାଏ ସେ ଯାହାକୁ
ଡାକୁଥାଏ ହିନା ଚକୋଇ ଡାକେ ଯେପରେ ଚକୁଅ ସାଥିକୁ
ଗହନ ବନର ନିଶା ସ୍ୱପନର ସେ ଯେ ଉଦାସୀ ପକ୍ଷୀ
ଘରୁ ବାହାରେ ଆସିବ ସକଳ ତ୍ୟଜି ନାହିଁ ଯେବେ ରକ୍ଷୀ
ଉଛନ୍ନ ରଡ଼ ସମାନ ଗବାକ୍ଷ କି କେହି ନାହିଁ
ଧରଣୀ କି ଦେଖିଲା ଶୂନ୍ୟ ପ୍ରାଣ କରେ ସାଇଁ ସାଇଁ
ଆଜ କେତକୀ ଫୁଲ ଫୁଟିଲ ପୁଣ୍ଡ ଉଠିଛି ପଦ୍ମ ଶରତପ୍ରାତେ
ଆସିଛି ସେ ପକ୍ଷୀ ଦୂର ଦେଶରୁ ତାଙ୍କର ସାଥେ ଖୋଜିବାକୁ
ପୁରୁଣା ମିତେ
ଏବେ କି ଅଛି କି ସେ ପ୍ରୀତିଚରିତ ଏଡ଼େ ଉଛନ୍ନ
ନ ଥାଉ ପଛେ ଶରୀର ତାପନା ମନ ତ ହୋଇଛି
ଶରତେ ଛନ୍ନ
କେତକୀର ଛବି ଆଖିରେ ତାହାର ଲାଗିଛି ଜୀବନ ଧରି
କେତେ ଦୁଃଖେ ଯେ ମରିଛି ସେହି ସବୁ ଭୁଲି କରି
ଖାଲି ପରାଣ ଭରି ଦେବ ଶେଷ ବଳ ଆପଣାକୁ
ହେମନ୍ତ ବସନ୍ତ ଗ୍ରୀଷ୍ମ ବର୍ଷା । ଆଉ ଯେତେ ଋତୁ ମାସ ଧରି
ମାନ୍ଦାର ସଂସାର ହିମୋଦ୍ଧିନ୍ ଶରତ୍ କରିଛି ସେହିଁ ରଚନା

ସେହି ଦିନୁ କହିବ କାହିଁକି ସେ ଦିନର ଛାୟା ଉନ୍ମାଏ
ଚିର ଗଣା।

କେତେ ରଙ୍ଗରେ ଉଜ୍ଜ୍ୱଳ ଜ୍ୟୋତେ ଥରେ ଥରେ
ମୋହିନୀ ମୂରତି ଧରି

ବିଚିତ୍ର ରଙ୍ଗେ ସେ କନ୍ଦ୍ରତର ଗାର ଉଜ୍ଜ୍ୱଳ ଜ୍ୟୋତେ ଅଙ୍କି
ନୂତନ କରି ।

ଅଛିରେ ପୁଣି ମୋହନ ପଥେ କେତେ ପଥ ଭୁଲି ମୁଁ
ନିରାଶ କରିବ, ନାହିଁ ମୋର ମନ, ମୁହିଁ ବି ମୋହନ
ଚିତ୍ତର ଅଛଇ ଧନ

ତେବେ କି ଅଜ୍ଞାନ ଭୂଲିଣ ସଂସାର ପନ୍ଥ ଅଧରମ
ଯାହାକୁ କହି

ନା, ନା ସଖା, କହେ ସଖୀ, ଅଧରମ ଧରମ କିଛି ନାହିଁ
ପ୍ରେମର ମୂରତି ସୁନ୍ଦର ଅତି
ମୁଁ ଚିର ବିରହିଣୀ ଦୁଃଖିନୀ ଅଛିନ୍ତି ଧାଇଁ
ପଥ ଜଣା ନାହିଁ, ବାଟ ଭୁଲି ମୁହିଁ, ଦଅ ଆଶ୍ରୟ
ଦିନକ ପାଇଁ

ରହିଯିବି ଆଜି ଦାଦନ, ଲ ଭୟ ତହିଁ,
ରୂପସୀ ନୁହେଁ,, ପିପାସିତା, ତୃଷିତା ଦୋଷ
ମୋର ନାହିଁ ।



ଭରିଥିଲ କେତେ ପଣ
ଶଙ୍କରାଚାର୍ଯ୍ୟ ସାଥିରେ ଟକ୍କର ଲଗାଇବ
ବୁଦ୍ଧ ସାଥିରେ ହେବ ଜାଣି
ଜଗତେ ଜଗାଇବ ଉତ୍କଳ ମାନବ ପଣି
ଜାଣିଥିଲ ନା ପଣ ?: ଦେଖିଥିଲି ପଛେ ଅରୁଣ ସ୍ୱପନ !

ଗୋଧୂଳି ଲଗନେ ଅଜି ଭାବୁଛ ବସି ବସି
ଗଳ୍ପ ପତ୍ର ସବୁ ଧରି
ଅଜି କାହିଁ ପଡ଼ି ରହିଛ ତୁମେ,
ଆଉ କାହିଁ ଥିଲେ ସେହି ।
କରିଥିଲ ପଣ ଥଣ୍ଡ
ଦେଶ ପାଇଁ ଦେବ ପ୍ରାଣ
ଦେଶ ସେବା କରି ବ୍ରତ, ଅପଣା ଅଢ଼ି ଶୁଭ ଆଚରତ
କରିବ ଲୋକେ ସେବା, ଜଗତେ ଦେଖାଇବ ସେ ମହତ
ଜୀବନ ମନଲୋଭା
ଅଛ କାହିଁ ? ସେ ସ୍ୱପନ ନାହିଁ ! କିଛି ଦେଖା ନାହିଁ ?
ଗୋଧୂଳି ଲଗନେ ଗୋପଲ ଫେରେ ଗୃହ ଅଙ୍ଗନେ
ମୋହର ଅଙ୍କ ଘର ନାହିଁ, ସୁଖ ନାହିଁ, ଶାନ୍ତି ନାହିଁ !
ଅନ୍ଧକାରେ ବୁଡ଼ି ଯିବାକୁ ହେବ ଅନ୍ଧକାରେ ଯାଇଁ ।



ମା ରୂପ ଧରି ରହିଛ ମନ୍ଦାକିନୀ
ମା ରୂପେ ଦିନା ଭୁଲିଥିଲି, ରହିଥିଲି ବାଲ୍ୟକାଳ ଗଣି
ମା ରୂପେ ବର୍ଣ୍ଣିଜିତା ନାରୀ, ସତୀ ଶିରୋମଣି,
ମା ରୂପେ ଲତା ଗୁଳ୍ମ ଆଦ ସବୁ ଜନନୀ
ମା ରୁପେ ହିଁ, ମା ରୂପେ ମଞ୍ଜିବି ମୁହିଁ
ସେବିବି ଚରଣ ତାଙ୍କର, ଜଗତ ଜନନୀଙ୍କର, ରହି ରହି
ମା ରୂପେ ସାଗର ଭୁବନ ଅବନୀ ଭରି
ମା ରୂପେ ମୋର ସକଳ ଜୀବନକୁ ପରି
ମା ରୂପେ ତ୍ରିଲୋକପାଳନୀ, ଯଶୋଦା ଜନନୀ
ମା ରୂପେ ମୁହିଁ ଚିର ପୂଜିବି ଚରଣ ତାଙ୍କର
ସେ ପଣ ମୋର ଚିର କାଳର ଜନନୀ, ଜନନୀ ।



ଦେବ ! ଭକ୍ତ କନ୍ୟା ନ ହେବ ପ୍ରସନ୍ନା ?
ନ ହେବ ପ୍ରସନ୍ନା ସତେ କି ?
ଜୀବନ ଦେବାର ଏହି ମର୍ମ କଥା —
ପାଇବାକୁ ହେଲେ ଜୀବନ, ଜୀବନ ଦିଅ ହେ ଯଥା
ଛେଳ କାଟିବା ନୁହେଁ ସତ୍ୟ କଥା
ଆପଣାର ତ୍ୟାଗ ପୂର୍ଣ୍ଣ ଯେବେ ହେବ
ପୂର୍ଣ୍ଣ ହେବ ମନୋରଥ ସତ୍ୟ କଥା
ଭକ୍ତଦେବ ! ଭକ୍ତ ଗୃହିଁ, ଭକ୍ତ ଯୁଗଲେ ପୂଜା କର,
ଭକ୍ତ ସତ ଦେଇପାରେ ଯେତୁ ସେହି ବିନା ପରମପ୍ରିୟ
ଈଶ୍ୱରର ଈଶ୍ୱର ସେହି ଏକ ଧ୍ରୁବ ବିନା ତାଙ୍କ ସାଥେ ରହି
ବହୁଳ ମଳୟ ସତେ କି ଆଶୀର୍ବାଦ ଏହି ଦେବୀଙ୍କର
କହୁଛନ୍ତି ପତ୍ନୀ ଅଛିଥିଲ ଦୁଃଖେ ଏବେ ଦେଉଛି
ଚନ୍ଦନ ମଳୟ
ଘେନ ଘେନ ଏହି ଆଶୀର୍ବାଦ, ପଶ୍ଚାତାପ ଯିବ
ହେବ ପାପ ପଙ୍କ ଦୂର ।
ପ୍ରବଳ ହେଉଛି ତପନ,
ତୁହି ଅଟେ ମାନବ ଆପଣା ଜୀବନ
ଜୀବନ ଜୀବନ ତୁହି ଭଲ କର
ଆନନ୍ଦ ଶାନ୍ତିରେ ରୁଦ୍ର ହେ ଭବ ।



ଆପଣା ସ୍ୱରେ ମୁଁ ଏଥର କହେ ଏକେଲା
ଆପଣା ମନେ ଗୁଣିବି ମୁହିଁ ଅତୀତର ସୁଖ ଦୁଃଖ ମୋହର ।
ବିହଗ ବିହଗୀ ସୁଖରେ ଥାଆନ୍ତି ଦାରିଦ୍ର କାଳ
ମୋହର କପାଳେ କେହି ନାହିଁ ଯେବେ କାହିଁ କି ହେବ
ଅସମ୍ଭାଳ ?

ଜୀବନ ପଥେ ବସନ୍ତ ରଥେ ବୁଲିବାର ସାଧା ବାନ୍ଧିଲି
ଶରତ ଶୀତର କାକର ଅଶ୍ରୁ ସବୁ ଏ ଦେହେ ଏଥର
ସହିଛି
ବିଷାଦର ଗୀତ ଗାଇବା ପାଇଁ ନାହିଁ ମୋର ଦୁଃଖ
ଜଗତର ସାଥି ସୁଖେ ଦୁଃଖେ ଜୀବନ ଏକାକୀ ନେଇ
ଅଭିମାନ ମୋର ବଡ଼ ବେଶୀ ପରା ଭାଇ
କାହିଁ ମୁଁ ସହି ପାରେ ନାହିଁ
କାହିଁକି କିଏ ବଢ଼ାଇବ ମୋତେ ଦୟାଇବ ?
ଅପଣା ମନେ ହସିବି କାନ୍ଦିବି ଧରଣୀରେ ରହି ।



କେତେକାଳ ବିତାଇଲି ମୁହିଁ ଆସି ଏ ସଂସାରେ
ବନ୍ଧୁ ଜନ ଚଳିଗଲେ ଏଥି ଛାଡ଼ି କି କାଳ ରେ
ଗଛ ଲତା ଯେତେ ମୋର ସ୍ମୃତିଅଙ୍କ ସୁନ୍ଦର ସୁଷମା ଭରି
ରହିଛନ୍ତି ଅଙ୍କ ଯାଇଛନ୍ତି ତ କେତେ ଭଙ୍ଗ ଜୀବନ
ଯାଇଛି ସରି
ସେହି ପରି ମୋହର ଜୀବନ ଗୋଟିକ ଯିବ ଯେ ଗଳି
ଯାହା ଥିଲା ମୋର ସ୍ୱଭାବ ହସ ଅବା ଦୁଷ୍ଟ ଦୁର୍ଗୁଣ
ଦେଇଗଲି ମୁହିଁ ଏହି ସଂସାରେ କାହାକୁ କହିବି ପୁଣି
କେତେ ସ୍ନେହରେ ବୁକୁରେ ମାର ବଢ଼ିଥିଲି
କେତେ ଜାଣି
କେତେ ସପନ ଦେଖିଥିଲି ମୁହିଁ ବାଲ୍ୟ କାଳରୁ
ଯୌବନ ନାମ
ଉଦାସ ପରଶେ କେତେଥର ମୁହିଁ ସଂସାର ପଥରୁ
ବାହାର ଯିବା ପାଇଁ
ଭରିଛି ମନ ଗୋଟିଏ ଗୋଟିଏ ଏବେ ସବୁ
ମନେ ଗୁନ୍ଥା ହୋଇ
ହିଅର ମନ୍ଦିରେ ଉଠିଥିଲା କେତେ ତରଙ୍ଗ,
କାହାକୁ ଅବୋଧ..

ସନ୍ତରଣି ଏହି ଭବସାଗର କଳ୍ପ ତରଙ୍ଗ
କେତେ ପ୍ରତିମା ଅଗରେ ମୋର ହୋଇଲେ ଠିଆ
ମୁଁ କାହିଁ ରସିଲି କାହିଁ ଭାସିଲି କାହୁଁ
ପଳାଇ ଅଇଲି ଭେ
ବନପଥ କେତେ ବିଚରିଲି ମୁହିଁ
ପର୍ବତ କାନ୍ତାରେ ଗହନେ ବୁଲିଲି ଯାଇ
ସବୁ ଉଦାରତା ଅଛି ଯାଇଛି ଗୃଳି
ବସି ବସି ଭାଳିଲି କଏ ମୋ ଜୀବନ ସଙ୍ଗାଳ
ଚନ୍ଦ୍ର ସୂର୍ଯ୍ୟ ତାରା ଉଠନ୍ତି ନଇ ଯାଆନ୍ତି ଗୃଳି
ହୁଅନ୍ତି ବନାହାର ?
ସେହିପରି ମୁହିଁ ଉଠୁଛି ପଡ଼ୁଛି ହୋଇ ନାହିଁ
ଏକାବେଳକେ ଅନ୍ତହଁ
ଜ୍ୟୋତ୍ସ୍ନା ମାଧୁରୀ କେତେ କାର ପାଇବାର ପାଇଁ
ଅକୁଳ ହୋଇଛି ଏ ହୃଅ ଅନ୍ତର
ସବୁ ଅଛି ଯାଇଛି ଗୃଳି ବସିଛି ଏକାକୀ ମୁହିଁ
ଜୀର୍ଣ୍ଣ ପତ୍ର ତନୁ ଶୀର୍ଣ୍ଣ ପରି ମନ ମୋର
ତଥାପି ସୂର୍ଯ୍ୟ ଉଠଇ ବାର ବାର ଚନ୍ଦ୍ର ତାରା ତାହା
ପରେ ପଛେ
ଉଠିବ ପଡ଼ିବ ବୁଡ଼ିବ ମୁହିଁ ଦୂରୁବେ ଜାଳି ମା ଥୁଣି
ଅଙ୍କ ଥରେ ଥରେ
ଅଜ୍ଞାତ ସହିତ ଛିଣ୍ଡା ହେବ ନାହିଁ ଏହି ସୂତ
ଗୃଳିଥିବ ଅହରହ ଦବା ରାତ୍ର ଡେଢ଼ ମାସ ବର୍ଷ ଋତୁ ମାତ୍ର
ଯୁଗ ଯୁଗ ଯିବ ବହି ଯାହାର ଯାହାର ପଥେ ଭଇ
କେଁଚଛି ପ୍ରେମ ଦିଲଛି ମନ ସବୁ ରହିଥିବେ କାହିଁ
ଯିବେ ନାହିଁ
ସକଳ ସୁଖର ଆଶା ଭରସା ସକଳ ଜନ

ଅନ୍ତର ଉତରେ ପଶିବେ ଯେବେ ହେବ ତେବେ ହିନା
ମୁଁ ମହାଜନ
ପବିତ୍ର କରଣ ତେବେ ଢ଼ାଳ ଅହେ ସବୁ
ଯେ ଯହିଁ ଅଛ ବାବୁ
ଏ ଜୀବନ ମୋର କର ଧନ୍ୟ
ତୁମେ ସମସ୍ତେ ମୋର ଗୁରୁ ସମାନ ।



ପୀଡ଼ା ପୀଡ଼ା ଏ ଶରୀର ପାଇ ନାହିଁ ସୁଖ ସାଗର
ପୀଡ଼ା ପୀଡ଼ା ଏ ମନ ପାଇଁ ନାହିଁ ମାନବ ଆଦର
ଦୂର ସ୍ରୋତେ ଭାସିଛୁ ମୁହିଁ କେବେ ଅବା ପ୍ରଭାତ
ସନ୍ଧ୍ୟା କେବେ ରହି
ଶୂନ୍ୟ ମନ୍ଦିର ମୋର ଭରିବାର ପାଇଁ
ହୋଇଛୁ ଆକୁଳ
ଅଇଁଛି ଜଣ ଜଣକୁ ଆସିଛନ୍ତି ଯେତେ
ତାହାଁରୁ ବନ୍ଧୁଲ ବାନ୍ଧୁ ନାହିଁ
ଏକ ଏକ ମିନା କରନ୍ତି ଅପଣାର
ଶୂନ୍ୟ ଛାୟା ବାଜି ସମ ଯାଇଛି ଗୃଲ
ପୁଣି ପଶ୍ଚାତେ କାହାର ଧାଇଁଛି ଅନ୍ଧକାର
ଶୂନ୍ୟ ହେବ କି ଏହି ଦେବତା ମନ୍ଦିର ?
ଆକାଶରୁ ଝରେ ସ୍ନେହର ଆଶୀଷ
ଧରଣୀ କପୋଳ ହୁଏ ଯେତେ ହରଷ
ବରଷା ଆସିଲେ ସରସା ହୁଏ ଦେଖିଛତ ତୁମେ
ମୁ ଅତ୍ତ କହିବି କସ ଆସ ଆସ ମୋ ପ୍ରାଣେ
ପରଶ ତୁମର ପାଇଲେ ମୁହିଁ
ପରିଶ ପ୍ରାଏଁ କୃଷର

ତୁମେ ପତ୍ନୀ ଅଛ ବନ୍ଧୁ କେତେ,
ମୋହର ମଧ୍ୟେ କରୁଛ କାରବାର



ସେହି ଗ୍ରତେ ବର୍ଷା ଯେବେ ଝୁମ୍ ଝୁମ୍
ଅକୁଳ ହୃଦୟ ଯେବେ ତୁମେ କଏ ସୁହାଗୀ
ନପାଇ ସୁଖ ପତିର କୋଳେ
ଅଛିଛ ବାହାର କାହାର ସନ୍ଧାନ ଲାଗି
ଜୀବନର ଏତେ ଦୁଃଖ ଶୋକ
ଭରିଛି କି ତବ ହୃଦୟେ
ଅବା ଅଥୟ ଅକୁଳ ଯୌବନ ଦେନ
ବ୍ୟାକୁଳ ସନ୍ଧାନେ ବୁଲ ଯେ
ତୁମି ସେ ଗଣ୍ଡ କଏ
କଟେବ ସୁଖ ସଞ୍ଚାର
ପ୍ରେମର ଅଳାପେ ଟାଣିନେବ ପତ୍ନ
ଆପଣା ପାଖର
ସେନେହର ପରଶ ବ୍ୟାକୁଳ ସରସ
ପାଇ ନାହିଁ ପତ୍ନୀ ତାର ପାଶୁ
ତୃପ୍ତ ବାସନା ମୁକୁଳ ନାହିଁ ପତ୍ନୀ
ଦେବାକୁ ସ୍ୱାଦ ପରଶ ହରଷୁ
ପ୍ରାଣର ପ୍ରତିମା ହୋଇ ନାହିଁ ଟତ୍ନୀ
ତୁମର ଦରଶନ
ଅନ୍ତର୍ଧାନ ସର ବିଷାଦର ଡାଉଛ ପକ୍ଷୀ
ହୋଇ ଅଧୀର ମନ
ହାସ କାଶ ବାସ ଏଥର ଅଛ ରଜନୀରେ
ଫୁଟିବ ଉଠି
ବାରୁଣ୍ଡା ଯୋଡରେ ପାଇ କାହାରେ ଅଛିଛ ପକ୍ଷୀ
ବେଣୁ କୁଟି

କି ମଧୁ ପାଇଛ ମୋର ହିଅରେ
ମୁହିଁ ତ ନ ଜାଣେ
ମୃଗ ଯେମନ୍ତେ ପାଶବନ୍ଧ ଭୁଲନ୍ତି
ମୁଁ ଭ୍ରମୁ ଇଙ୍ଗିତେ କେଉଁ ଗହନେ
କ୍ଷୁଦ୍ର ହେବ ଗୃହ ନେବ ତୁମ୍ଭର ବିଷାଦ ହେଲା
ଅଳ ଏ ବୃତ୍ତ ଛାଡ଼ି ଯିବ ତୁମେ ନଗରର ଜନ ସକଳ
ଗୋଟିଏ ପରଶ ପାଇଁ ଗୋଟିଏ ହରଷ ପାଇଁ
ଅତୁଳ ହୋଇ
ଅଭାଗିନୀ ତୁହି କପାଳେ ତୋହର ସୁଖ ନାହିଁ
ତଥାପି ଭୁଲିବୁ ଆପଣା ଉଛୁଳ ପଥେ
ନଦ ତୁମ୍ଭର ମୀନ ଯାହା ଅସ୍ତ ସବୁ ସହିବୁ ସତେ
କି ସାହସ ତୁ କଲୁ ଖବର ସିନା ହେଲୁ
କଲୁ ଗୃହ ତୋର ନାହିଁ
ଶାସ୍ତ୍ରରେ ଦେଇଛନ୍ତି ଯେ ଯଉବନ
ସେହି ସିନା ଜାଣେ କାହିଁକି ଏପରି ମନ
ତଥାପି କହିବେ ଲୋକେ କି କଲା ଏ ବୃନ୍ଦାଳୀ
ଶୁଦ୍ଧ ପରିଜନ ଛାଡ଼ି ସବୁ ଆଜି ହାନ
ଶାନ୍ତି ସେ କାହୁଁ ନରକେ ଗଲା ପଳାଇ
ହାସ୍ୟ ହସ୍ତ ଦୁଃଖେ କରନ୍ତି ଯାପନ ସିନା ଏହାର ଦିନମାନ



ସମାପ୍ତ ।

ଶ୍ରୀ ରାଧାକୃଷ୍ଣ ସାହୁଙ୍କ ଦ୍ୱାରା ମୁଦ୍ରିତ ମହାନଦୀ ପ୍ରେସ ଇଦ୍‌ଗା ଛକ
କଟକ ।

# ଶ୍ରୀ ଲକ୍ଷ୍ମୀନାରାୟଣ ସାହୁଙ୍କ ରଚିତ

## ଅନ୍ୟାନ୍ୟ ପୁସ୍ତକାବଳୀ

### ଗଦ୍ୟ

| | | | |
|---|---|---|---|
| ପ୍ରଭଞ୍ଜନ୍ | ଟ ୦ । | ଝଲକ | ଟ ୦ । |
| ଜୀବନ ଓ ଜୀବନୀ | ଟ ୦ । | ମହାତ୍ମା ଗାନ୍ଧୀ | ଟ ୦ ୶ |
| ନାରୀ କବି ମାଧବୀ | ଟ ୦ / | ଓଡ଼ିଶା ଗଡ଼ଜାତ | ଟ ୦ ୶ |
| ବେକାର ମଜା | ଟ ୦ / | ଯୌନ କଥା, | ଟ ୦ ୷ |
| ହୃତବାଣୀ | ଟ ୦ । | ଶକୁନ୍ତଳା | ଟ ୦ ୶ |
| ସାନ୍ତ୍ୱନା | ଟ ୦ । | ସାମ୍ୟବାଦ | ଟ ୦ / |
| ସ୍ତ୍ରୀ ଶିକ୍ଷା | ଟ ୦ । | ଭାରତସେବକ ସମିତି | ଟ ୨ /୨ |
| ନାରୀ ଚରିତ୍ର | ଟ ୦ | ଶାନ୍ତି | ଟ ୦ । |
| ସଭ୍ୟତା ଅଭିଭାଷଣ | ଟ ୦ ୶ | ବେଶ୍ୟା | ଟ ୦ ୷ |
| ଦୀକ୍ଷା | ଟ ୦ । | କଳା | ଟ ୦ ୶୨ |
| ଗୋଖେଲେ | ଟ ୦ । | ମୋର ଜୀବନ କଥା | ଟ ୦ ୶ |

### ପଦ୍ୟ

| | | | |
|---|---|---|---|
| ଛିନ୍ନପତ୍ର | ଟ ୦ । | ପରାଗ | ଟ ୦ । |
| ଆଶୀର୍ବାଦ | ଟ ୦ ୷ | ମୋହନ | ଟ ୦ ।୶ |
| ମଧୁରେଖା | ଟ ୦ ।୶ | ପ୍ରବାସୀ | ଟ ୦ ।/ |
| ପାସୋର | ଟ ୦ ୷ | | |

କଟକର ସବୁ ବିଶିଷ୍ଟ ବହି ଦୋକାନମାନଙ୍କରେ ମିଳେ ।

